# ମାଳି ପର୍ବତ ଆନ୍ଦୋଳନ: ଏକ ଦୃଷ୍ଟିପାତ

ସାମ୍ପ୍ରତିକ ସମୟ ପୁଞ୍ଜିବାଦୀ ସାମ୍ରାଜ୍ୟବାଦ ଓ ଜନ ଆନ୍ଦୋଳନ ମାନଙ୍କ ସଂଘାତର ସମୟ। ପୁଞ୍ଜିବାଦ ପ୍ରତ୍ୟେକ ମଣିଷକୁ ଉପଭୋକ୍ତା କରି ଦେଖେ, ଉପଭୋକ୍ତା କରି ଗଢ଼େ। ମୋଟା ମୋଟି ଭାବରେ କହିଲେ, ପୁଞ୍ଜିବାଦ ଆପଣା ବଜାର ପାଇଁ ଏକ ଉପଭୋକ୍ତାବାଦୀ ସମାଜ ତିଆରି କରେ।ଏହି ସମାଜର ଆବଶ୍ୟକତା ପୂରଣ କରିବା ପାଇଁ ବିଶ୍ୱସାରା ପ୍ରାକୃତିକ ସମ୍ପଦର ଦହନ କରେ। ଆଜି ଆମେ ତୃତୀୟ ବିଶ୍ୱରେ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ବିପୁଳ ଖଣିଖନନ ଅଭିଯାନରେ ଏହା ଦେଖିପାରିବା। କିନ୍ତୁ, ଖୁସିର କଥା ଏହା ଯେ, ଏହି ଅଭିଯାନ ଗୁଡିକୁ ତୀବ୍ର ଜନପ୍ରତିରୋଧର ସମ୍ମୁଖୀନ ହେବାକୁ ପଡୁଛି। ଯୋଉ ଜନଗଣଙ୍କ ପାଦ ତଳେ ଥୁଆ ଖଣିଜ ସଂପଦ, ସେମାନେ ନିଜର ଜୀବନ ଜୀବିକା ଓ ଜଳ, ଜଙ୍ଗଲ, ଜମିର ସୁରକ୍ଷା ପାଇଁ ଖଣିଖନନ ବିରୁଦ୍ଧରେ ଓଲ୍ଗାଇ ଆସୁଛନ୍ତି ଯୁଦ୍ଧ ପଡିଆକୁ। ଭାରତରେ ମଧ୍ୟ ପରିସ୍ଥିତି ତଦ୍ରୂପ। ସବୁ ଜନ ଆନ୍ଦୋଳନ ଏବେ ଗୋଟିଏ ଗୋଟିଏ ଯୁଦ୍ଧକ୍ଷେତ୍ର । ଜନଗଣ ବନାମ ପୁଞ୍ଜିବାଦ ସମର୍ଥକ ଭାରତୀୟ ରାଷ୍ଟ୍ର। ଉଣା ଅଧିକେ ସମସ୍ତଙ୍କ ଅଛି ଗୋଟାଏ ସଂଘର୍ଷ ମୟ ଇତିହାସ । ମାଳିପର୍ବତ ସେଠୁ ବାଦ ପଡନ୍ତା କିପରି!

ମାଳିପର୍ବତ ହେଉଛି ଏକ ପାହାଡର ନାମ। ଏହା ଦକ୍ଷିଣ ଓଡିଶାର କୋରାପୁଟ ଜିଲ୍ଲାର ସିମିଳିଗୁଡ଼ା ତହସିଲରେ ଥିବା ଦେଓମାଳି ପର୍ବତକୁ ଲାଗି ଠିଆ। କୋରାପୁଟ ଦକ୍ଷିଣ ଓଡିଶାର ଏକ ଆଦିବାସୀ ଅଧ୍ୟୁଷିତ ଜିଲ୍ଲା। ଯେଉଁଠାରେ ଓଡିଶାର ବିଭିନ୍ନ ଆଦିବାସୀ ସଂପ୍ରଦାୟର ଲୋକ ବାସ କରନ୍ତି । ଆଦିବାସୀମାନେ ଏ ଅଂଚଳର ମୁଳ ନିବାସୀ ଅଟନ୍ତି। ଏମାନେ ନିଜର ପାରମ୍ପରିକ ସଂସ୍କୃତି ଯଥା- ଭାଷା, ଜ୍ଞାନ, ପୂଜାପାଠ, ପର୍ବପର୍ବାଣି, ନାଚଗୀତ ଓ ଶ୍ରମ ସହ ଘନିଷ୍ଠ ଭାବେ ଜଡିତ । ସ୍ଥାନୀୟ ଆଦିବାସୀ ଖାଦ୍ୟ, ବସ୍ତ୍ର ଓ ବାସଗୃହ ଭଳି ମୌଳିକ ଆବଶ୍ୟକତାର ପୂର୍ତ୍ତି ପର୍ବତରୁ କରିଥାନ୍ତି। ଏହି ପର୍ବତ ହିଁ ସେମାନଙ୍କର ଜୀବନ ଜୀବିକାର ଉତ୍ସ ଅଟେ । ଏହା ସହିତ ତାଙ୍କର ଧାର୍ମିକ ବିଶ୍ୱାସ ଗଭୀର ଭାବରେ ଜଡ଼ିତ। ସେମାନେ ବିଶ୍ୱାସ କରନ୍ତି ଯେ, ମାଳି ପର୍ବତ ହେଉଛି ସେମାନଙ୍କ ଡୁମା ଓ ଦେ-ଦେବତାମାନଙ୍କର ବାସସ୍ଥାନ। କିନ୍ତୁ, ବର୍ତ୍ତମାନ ପରିସ୍ଥିତିରେ ଶିଳ୍ପାୟନ ଓ ସହରୀକରଣ ଜଙ୍ଗଲ ଓ ପାହାଡ଼କୁ ନଷ୍ଟ କରିବା ଦିଗରେ ଅଗ୍ରସର । ଖଣି ଖନନ ଓ ସହରୀକରଣ ପ୍ରକ୍ରିୟାକୁ ଏହି ଅଂଚଳର ଆଦିବାସୀମାନେ ବିଭିନ୍ନ ସମୟରେ ବିରୋଧ କରି ଆସୁଛନ୍ତି ।

ଓଡ଼ିଶାର ଗନ୍ଧମାର୍ଦ୍ଦନ, ନିୟମଗିରି, ଖଣ୍ଡୁଆଳି ମାଳି ଭଳି ଦେଓମାଳି ସହ ଯୋଡି ହୋଇଥିବା ମାଳି ପର୍ବତରେ ମଧ୍ୟ ବକ୍ସାଇଟ୍ ପ୍ରଚୁର ପରିମାଣରେ ଗଚ୍ଛିତ ରହିଛି। ଏହି ମାଳି ପର୍ବତ ଆଖପାଖରେ ଶିଳ୍ପକୁ କେନ୍ଦ୍ରକରି ଗଢି ଉଠିଛି ସିମିଳିଗୁଡା, ଦାମନଯୋଡି ଓ ସୁନାବେଡା ଭଳି କିଛି ସହର । ଏଠାରେ ହିନ୍ଦୁସ୍ଥାନ ଏରୋନେଟିକ ଲିମିଟେଡ୍, ନାଲକୋ ଏବଂ ଅନେକ ଦେଶୀ ବିଦେଶୀ କମ୍ପାନୀ ପ୍ରତିଷ୍ଠିତ। ୨୦୦୩ରେ ବିର୍ଲା ଗ୍ରୁପ ଅଫ କମ୍ପାନୀ ଏଠାରେ ଏକ ବକ୍ସାଇଟ୍ ଖଣି ପ୍ରକଳ୍ପର ପ୍ରସ୍ତାବ ନେଇ ଆସିଥିଲା ।

୨୦୦୩ ମସିହାରେ ଆଲୁମିନିୟମ ଉତ୍ପାଦନକାରୀ କଂପାନି ହିଣ୍ଡାଲକୋର ମାଲିକାନାରେ ଥିବା ଆଦିତ୍ୟ ବିର୍ଲା ଗୋଷ୍ଠିକୁ ମାଳି ପର୍ବତର ଖଣି ଖନନ କରିବା ପାଇଁ ଓଡ଼ିଶା ସରକାର ସ୍ୱିକୃତି ପ୍ରଦାନ କରିଥିଲେ । ଏହି ପ୍ରକଳ୍ପ ସିମିଳିଗୁଡାରୁ ପ୍ରାୟ ୧.୫ କି.ମି. ଦୂର ଡଳିଆମ୍ବ ନିକଟରେ ପ୍ରସ୍ତାବିତ । ପ୍ରକଳ୍ପର ସର୍ତ୍ତ ଅନୁଯାୟୀ ବର୍ଷକୁ ପ୍ରାୟ ୬ଲକ୍ଷ ଟନ୍ ବକ୍ସାଇଟ୍ ୨୦ବର୍ଷ ପର୍ଯ୍ୟନ୍ତ ଖନନ ହେବ । ଏହି ପ୍ରକଳ୍ପ ଦ୍ୱାରା ଚାରୋଟି ପଂଚାୟତ- ଶୋରିଷ ପଦର, ଦଳେଇଗୁଡ଼ା, ପାକଝୋଲା, ଏବଂ ଖୁଡି ଅନ୍ତର୍ଗତ ପ୍ରାୟ ୪୪ଟି ଗାଁ ପ୍ରଭାବିତ ହେବେ। ୨୦୦୩ ମସିହାରେ ମାଳି ପର୍ବତର ଚତୁପାର୍ଶ୍ୱରେ ଥିବା ଆଦିବାସୀମାନେ ନିଜକୁ ସଂଗଠିତ କରି ଖଣି ଖନନକୁ ବିରୋଧ କରିବା ପାଇଁ "ମାଳି ପର୍ବତ ସୁରକ୍ଷା ସମିତି" ଗଠନ କରିଥିଲେ । ଗ୍ରାମବାସୀମାନେ ଦାବୀ କରନ୍ତି ଯେ, ଉକ୍ତ ଅଂଚଳଟି ସମ୍ବିଧାନର ପଂଚମ ସୂଚି ତାଲିକା ଭୁକ୍ତ ଅଂଚଳ ଅଟେ ଓ ସେଠାରେ ଖଣି ଖନନ କରିବା ପାଇଁ ଗ୍ରାମସଭାର ସହମତି ନିହାତି ଆବଶ୍ୟକ । ଅଧିନିୟମ ୧୯୯୬ (PESA ACT) ଅନୁଯାୟୀ ଆଦିବାସୀଙ୍କର ଅଧିକାର ସୁରକ୍ଷା ପାଇଁ ବିଶେଷ ସୁବିଧା ଉପଭୋଗ ପ୍ରଦାନ କରେ । ଏହା ଜଙ୍ଗଲ ସୁରକ୍ଷା ଅଧିନିୟମ-୨୦୦୬ ଉପରେ ପର୍ଯ୍ୟବେସିତ ସୁପ୍ରିମକୋର୍ଟଙ୍କ ନିୟମଗିରି ଖଣି ଖନନ ବିରୁଦ୍ଧରେ ଦେଇଥିବା ରାୟ ଦ୍ୱାରା ପ୍ରମାଣିତ । ପରିବେଶବିତ୍ ତଥା ଗ୍ରାମବାସୀଙ୍କ ଅନୁଯାୟୀ ଖଣି ଖନନ ହେଲେ ସେ ଅଂଚଳର ଚାଷଜମିରେ ଜଳସେଚନ ପାଇଁ ଯେଉଁ ଜଳ ଉତ୍ସ ଅଛି ସବୁ ଲୋପ ପାଇବ । ଆହୁରି ମଧ୍ୟ ଆଶଙ୍କା କରାଯାଏ ଯେ, ଏହି ଅଂଚଳର ଆଦିବାସୀମାନେ ବିସ୍ଥାପିତ ହେବେ, ନିଜ ଭିଟାମାଟିରୁ ତଡା ଖାଇ ଜୀବନ ଜିବିକାର ବିକଳ୍ପ ପାଇଁ ବାହାର ରାଜ୍ୟକୁ ଦାଦନ ଯିବାପାଇଁ ବାଧ୍ୟ ହେବେ । ଏ ପାହାଡ଼ରୁ ୩୨ଟି ଝରଣା ଏବଂ ଚାରୋଟି କେନାଲ ବାହାରିଛି । ଯାହା ୪୪ଟି ଗାଁରେ ରହୁଥିବା ପ୍ରାୟ ୨୫ଶହ ପରିବାରଙ୍କୁ କାହିଁ କେଉଁ କାଳରୁ ଜୀବନ ଜୀବିକା ନିର୍ବାହ କରିବାରେ ସାହାର୍ଯ୍ୟ କରି ଆସୁଛି।

୨୦୧୦ ମସିହାରେ ସ୍ଥାନୀୟ ଲୋକଙ୍କ ତୀବ୍ର ବିରୋଧ ଦ୍ୱାରା ଏହି ଖଣି ଖନନ କାର୍ଯ୍ୟ ବନ୍ଦ୍ ହୋଇଥିଲା । ୨୦୧୨ ରେ ଏକ ସ୍ୱଳ୍ପ ସମୟ ପାଇଁ ବକ୍ସାଇଟ୍ ଖନନ ଆରମ୍ଭ

ହୋଇଥିଲା । କିନ୍ତୁ ଦେଓମାଳି ପର୍ବତ ସୁରକ୍ଷା ସମିତିର ବିଦ୍ରୋହ ଯୋଗୁଁ କମ୍ପାନୀକୁ ନିଜ କାର୍ଯ୍ୟକୁ ବନ୍ଦ୍ କରିବାକୁ ପଡିଲା ।

ଜାନୁୟାରୀ ୧୦, ୨୦୧୪ ରେ ୪୪ଟି ଗାଁର ଏକ ହଜାରରୁ ଅଧିକ ଲୋକ ଖଣି ଖନନ କାର୍ଯ୍ୟ କଳାପକୁ ବିରୋଧ କରିବା ପାଇଁ ଏକ ଧର୍ମଘଟ କରିଥିଲେ ଯାହାଦ୍ୱାରା ଏହି ଅଂଚଳରେ ୧୪୪ ଧାରା ଲାଗୁ କରାଯାଇଥିଲା । ଏହି ବିବାଦ ସମୟରେ ମାଳି ପର୍ବତ ସୁରକ୍ଷା ସମିତିର ଅନେକ ନେତୃସ୍ଥାନୀୟ ଲୋକମାନଙ୍କୁ ପୋଲିସ ପ୍ରଶାସନ ଏବଂ ସ୍ଥାନୀୟ ଗୁଣ୍ଡାଙ୍କର କ୍ରୋଧର ସମ୍ମୁଖିନ ହେବାକୁ ପଡିଥିଲା । ଅନେକଙ୍କୁ ଅନେକ ମିଥ୍ୟା ମାମଲାରେ ଜେଲ ଯିବାକୁ ମଧ୍ୟ ପଡିଥିଲା । କିନ୍ତୁ ଆଦିବାସୀଙ୍କ ମିଳିତ ମଂଚ ଦ୍ୱାର ସ୍ଥିର ହେଲା ଯେ, ସେମାନେ ମାଳିପର୍ବତରେ ଖଣି ଖନନ କରିବାକୁ ଦେବେ ନାହିଁ । ପରବର୍ତ୍ତି ସମୟ ତଥା ଜାନୁୟାରୀ୧୮, ୨୦୧୭ ରେ ଆହୁରି ଅଧିକ ଆଦିବାସୀ ମିଶି ଖଣି ଖନନକୁ ବିରୋଧ କରିବା ପାଇଁ ଏକ ରାଲିର ଆୟୋଜନ କରିଥିଲେ ।

## ମାଳି ପର୍ବତର ଭୌଗଳିକ ଅବସ୍ଥିତି

ମାଳି ପର୍ବତ ପୂର୍ବଘାଟ ପର୍ବତମାଳାର ଦେଓମାଳି ପରିସରର ଏକ ପ୍ରମୁଖ ପର୍ବତ। ଦେଓମାଳି ଶିଖର ହେଉଛି ଏହି ପୂର୍ବଘାଟ ପର୍ବତମାଳାର ଉଚ୍ଚତମ ଶୃଙ୍ଗ ଯାହାର ଉଚ୍ଚତା ପ୍ରାୟ ୧୬୭୨ ମିଟର। ଏହା ସବୁଜ ଜଙ୍ଗଲ ଦ୍ୱାରା ଘେରି ରହିଛି ଏବଂ ବିଭିନ୍ନ ଉଦ୍ଭିଦ ଓ ବନ୍ୟ ଜନ୍ତୁରେ ଭରପୁର । ଏହି ପାହାଡ଼ ପରିଷର ବକ୍ସାଇଟ୍, ଚୂନପଥର, ରତ୍ନ ପରି ବିଭିନ୍ନ ଖଣିଜ ସଂପଦରେ ସମୃଦ୍ଧ। ମାଳି ପର୍ବତ ନଦୀ, ଗଭୀର ଉପତ୍ୟକା ତଥା ଘାଟି ଇତ୍ୟାଦି ସହ ଏକ ସୁନ୍ଦର ପରିବେଶ ସୃଷ୍ଟିକରେ । ପାହାଡ଼ ପରିସରରେ ବିଭିନ୍ନ ଆଦିବାସୀ ଯେମିତିକି, ପରଜା, ଭୂମିଆଁ, ମାଳି, କନ୍ଧ, ଡମ୍, ଗଦବା, କୁମ୍ଭାର, କମାର, ଦୁଲିଆ, ଇତ୍ୟାଦି କେଉଁ ଆବାହମାନ କାଳରୁ ବାସ କରୁଛନ୍ତି ।

## ଉଦ୍ଭିଦ-:

ମାଳି ପର୍ବତର ଅରଣ୍ୟ ମୁଖ୍ୟତଃ କ୍ରାନ୍ତିୟ ପର୍ଣ୍ଣମୋଚି ଅରଣ୍ୟ ଜାତୀୟ ଅଟେ। ପାହାଡ଼ର ଭୌଗୋଳିକ ପରିବେଶ ଅନୁଯାୟୀ ବିଭିନ୍ନ ପ୍ରକାରର ଜଳବାୟୁ ବର୍ଷର ବିଭିନ୍ନ ସମୟରେ ଅନୁଭୂତ ହୋଇଥାଏ । ବର୍ଷ ତମାମ ପାହାଡ଼ି ଝରଣାର ସ୍ରୋତ, ଜଳପ୍ରପାତ ଓ ବିଭିନ୍ନ ଜଳସ୍ରୋତ ଶୁଖି ନ ଥାଏ। ଫଳତଃ ଏହି ଅଞ୍ଚଳରେ ଆର୍ଦ୍ର ପର୍ଣ୍ଣମୋଚି ସବୁଜ ପ୍ରଜାତି ଓ ଚିରହରିତ ପ୍ରଜାତିର ବୃକ୍ଷଲତା ମୁଖ୍ୟତଃ ସାଲ ଜଙ୍ଗଲକୁ ଧାରଣ ଦେଖା ଦେଇଥାଏ । ମାଳି ପର୍ବତ ବିଭିନ୍ନ ଔଷଧ ଉଦ୍ଭିଦର ଏକ ପ୍ରାକୃତିକ ଗନ୍ତାଘର। ବିଭିନ୍ନ ଫଳ, ଫୁଲ, ପତ୍ର, ମୂଳ, ଶାଖା, ମାଞ୍ଜୀ ଇତ୍ୟାଦି ବ୍ୟବହାର କରି ସ୍ଥାନୀୟ ଲୋକମାନେ ବିଭିନ୍ନ ରୋଗର

ଉପସମ କରିଥାନ୍ତି ।

ଭୌଗଳିକ ଅବସ୍ଥିତ-:

ବତିଶଟି ଝରଣା ଓ ଆଠଟି ପାହାଡ଼କୁ ନେଇ ମାଳିପର୍ବତ ଗଠିତ। ଏ ପାହାଡ଼ ଗୁଡିକ ଚାରୋଟି ପଂଚାୟତକୁ ନେଇ ବିସ୍ତୃତ (ପାକଗ୍ଣା, ଶୋରିଷ ପଦହ, ଖୁଡି, ଦଲେଇ ଗୁଡା)। ପାହାଡ଼ ଗୁଡିକ ନାଁ ହେଲା ଲଦ, କାରାନଜି କାନ୍ଦା, କାମାରାଇ ସିଙ୍ଗାଜାଲା, ଜାଡ଼େରେକୁ ଦେଓମାଳି, ତେନ୍ଦ୍ରଜାଲା, କାବିଲାଡି, ପିଜାମାହାଁ, ଅଁଲାକନ୍ଦା, କୁପିମାହାଁ, ଭଦେଲିଗାୟୁ, କଂଜାମୁଡି ଓ ବିହାଁଜାଲା। ଏସବୁ ପାହାଡ଼କୁ ନେଇ ମାଳି ପର୍ବତ, ସେରୋବନ୍ଦ୍ ଓ ଦେଓମାଳି ପର୍ବତ ଗଠିତ ।

ବଣ୍ୟ ଜନ୍ତୁ:-

ଏ ପାହାଡ଼ ପରିସରରେ ବିଭିନ୍ନ ପ୍ରକାରର ସ୍ତନ୍ୟପାଇ ପ୍ରାଣୀ, ସରୀସୃପ, ପକ୍ଷୀ, ଇତ୍ୟାଦି ଦେଖିବାକୁ ମିଳନ୍ତି । ଦୃତ ଶିଳ୍ପାୟନ ଓ ଖଣିଖନନ, ଜଙ୍ଗଲ ନଷ୍ଟ, କାରଣରୁ ଅନେକ ବନ୍ୟଜନ୍ତୁ ବିଲୁପ୍ତ ପ୍ରାୟ ।  ଏଠାରେ ଭାଲୁ, ଗଧିଆ, ହରିଣ, ସମ୍ବର, କୁଟୁରା, ବାଘ, ଚିତା ବାଘ, ହାତୀ, ବାରହା, ଠେକୁଆ, ବିଲୁଆ, ଝିଙ୍କ, ଇତ୍ୟାଦି ବନ୍ୟପ୍ରାଣୀ ଦେଖାଯାନ୍ତି । ସରୀସୃପ ମାନଙ୍କ ମଧରେ  ଗୋଧି, ଅନେକ ପ୍ରକାର ବିଶାକ୍ତ ସାପ, କଇଁଛ, ବିଭିନ୍ନ ପ୍ରକାର ବେଙ୍ଗ ଓ  ପକ୍ଷୀ ମଧରେ ବିଭିନ୍ନ ଦେଶୀ ଓ ବିଦେଶୀ ପକ୍ଷୀ ଦେଖାଯାନ୍ତି ।

ପ୍ରାକୃତିକ ସମ୍ପଦ :-

ମାଳି ପର୍ବତ ଆକର୍ଷଣୀୟ ପ୍ରାକୃତିକ ସୌନ୍ଦର୍ଯ୍ୟ, ସମୃଦ୍ଧ ଆଦିବାସୀ ସଂସ୍କୃତି ସହ ବିଭିନ୍ନ ପ୍ରାକୃତିକ ଖଣିଜ ସମ୍ପଦର ଏକ ଭଣ୍ଡାର ଅଟେ । ବିଭିନ୍ନ ପ୍ରାକୃତିକ ସମ୍ପଦ ମଧରେ ବକ୍ସାଇଟ୍, ଚୂନ ପଥର, ମାଙ୍ଗାନିଜ, ମାଇକା, ଗ୍ରାଫାଇଟ୍ ଇତ୍ୟାଦି ବହୁଳ ପରିମାଣରେ ଗଚ୍ଛିତ।

ଜଙ୍ଗଲ ଜାତ ଦ୍ରବ୍ୟ :-

ମାଳି ପର୍ବତ ସ୍ଥାନୀୟ ଅଧିବାସୀମାନଙ୍କର ଜଙ୍ଗଲଜାତ ଦ୍ରବ୍ୟର ମୁଖ୍ୟ ଉତ୍ସ ଅଟେ। ଜଙ୍ଗଲରୁ ପାଉଥିବା ଜଙ୍ଗଲଜାତ ଦ୍ରବ୍ୟ ମଧରେ ଆମ୍ବ, ପଣସ, ଜାମୁକୋଳି, କଣ୍ଟାକୋଇଲି, ସିନ୍ଦିକୋଇଲି, ଚାର କୋଳି, ଅଁଳା, ବାହାଡ଼ା, କେନ୍ଦୁ, ଇତ୍ୟାଦି ପ୍ରମୁଖ । କନ୍ଦାମାନଙ୍କ ମଧରେ ପିଠ୍ କନ୍ଦା, ତାରଗାକନ୍ଦା, ସିନ୍ଦିକନ୍ଦା, କଲିଜା କନ୍ଦା, ବଚକନ୍ଦା ସହଜଲଭ୍ୟ । ଘରେ ବ୍ୟବହୃତ ହେଉଥିବା ସିଆଳି, ଜଡ଼ା ଫୁଲ, ଝାଡୁ, ସିନ୍ଦିକିଡା, ମହୁ, ଝୁଣା, କୁମାଜଡା ଇତ୍ୟାଦି ମଧ ଜଙ୍ଗଲରୁ ସଂଗୃହିତ ହେଇଥାଏ। ଏପରିକି ଆଦିବାସୀମାନଙ୍କ ମୁଖ୍ୟ ପାନୀୟ ଶଲପ, ଖଜୁରୀ ରସ, ପଣସ ରସ ଇତ୍ୟାଦି ଜଙ୍ଗଲରୁ

ମିଳିଥାଏ ।

**ଔଷଧିୟ୍ ବୃକ୍ଷ :-**

ମାଳିପର୍ବତ ବିଭିନ୍ନ ପ୍ରାକୃତିକ ଔଷଧରେ ପରିପୂର୍ଣ୍ଣ। ଆଦିମକାଳରୁ ଏ ଅଂଚଳରେ ବସବାସ କରୁଥିବା ଅଧିବାସୀମାନେ ମାଳି ପର୍ବତ ଉପରୁ ମିଳୁଥିବା ବିଭିନ୍ନ ଔଷଧିୟ ଚେରିମୁଳି ଉପରେ ନିର୍ଭର କରି ରୋଗ ନିରାକରଣ କରନ୍ତି । ଦେଶୀୟ ଜ୍ଞାନ-ବିଜ୍ଞାନ ପ୍ରୟୋଗ କରି ଏହି ଅଧିବାସୀମାନେ ବିଭିନ୍ନ ଚେର, ମୁଳ, ଫଳ, ଫୁଲ, ପତ୍ର, କନ୍ଦା ଇତ୍ୟାଦିକୁ ଔଷଧରେ ପରିଣତ କରି ନିଜେ ଓ ନିଜର ଗୃହପାଳିତ ପଶୁର ରୋଗ ଉପସମ କରିଥାନ୍ତି । ଔଷଧିୟ ବୃକ୍ଷମାନଙ୍କ ମଧ୍ୟରେ କଲିଜା କନ୍ଦା, ବଚକନ୍ଦା, ମାଛକୁଣ୍ଡ ଫୁଲ, ପୁରୁଣା ତେନ୍ତୁଳି, ଆଦି ପେଟ ବ୍ୟଥା ପାଇଁ ବ୍ୟବହାର କରିଥାନ୍ତି । ବାତ ପାଇଁ ଗିଲୋରୀ, ଦାନ୍ତ ବିନ୍ଧା ପାଇଁ ଅଁଳା ଗଛର ଛାଲି, ଗ୍ୟାସଟ୍ରିକ ପାଇଁ ସତାବରୀ ଓ ଇସ୍ୱରଜଟ୍, କୃମି ପାଇଁ ପାତାଳ ଗରୁଡ଼ ଆଦି ଜଙ୍ଗଲରୁ ସଂଗ୍ରହ କରିଥାନ୍ତି । ଗାଈ ଗୋରୁଙ୍କ ରୋଗର ଉପସମ ପାଇଁ ଓ ଅନ୍ୟ ଗୃହପାଳିତ ପଶୁମାନଙ୍କ ପାଇଁ ଜୁମାଜଡ଼ା, ଅରଗ ଗଛର କ୍ଷୀର, ପୁରୁଣା ତେନ୍ତୁଲି, ଅଁଳା, ଗଛର ଛାଲି, ମଧ ଜଙ୍ଗଲରୁ ପାଇଥାନ୍ତି । ମଶା, କାଛୁ କୁଣ୍ଡିଆ ଇତ୍ୟାଦିର ଉପସମ ପାଇଁ କରଞ୍ଜ ତେଲ, ଜଙ୍ଗଲରୁ ସଂଗ୍ରହ କରିଥାନ୍ତି । ନିକଟସ୍ଥ ଗ୍ରାମ ତେନ୍ତୁଳିଗୁଡ଼ାରେ ଶ୍ରୀ ଗୁପ୍ତେଶ୍ୱର ଚେର ମୁଳି ଔଷଧ ଓ ପାରମ୍ପରିକ ବିଜ୍ଞାନ ଓ ଗବେଷଣା କେନ୍ଦ୍ର ଅବସ୍ଥିତ ଯାହାକି ମାଳି ପର୍ବତରୁ ମିଳୁଥିବା ବିଭିନ୍ନ ଚେର ମୁଳିରୁ ପାରମ୍ପରିକ ଢ଼ଙ୍ଗରେ ଔଷଧ ତିଆରି କରି ରାଜ୍ୟ ତଥା ଦେଶର ବିଭିନ୍ନ ପ୍ରାନ୍ତରୁ ଆସୁଥିବା ଲୋକଙ୍କ ରୋଗ ଉପସମ କରାଯାଇଥାଏ । ଏହି ଚେରମୁଳି ଔଷଧ ଉଚ୍ଚ ରକ୍ତ ଚାପ, କ୍ୟାନସର (କର୍କଟ) ଯକ୍ଷ୍ମା, କିଡ଼ନି ରୋଗ, ଇତ୍ୟାଦି ସୁସ୍ଥ ହେବାର ପ୍ରମାଣ ମିଳେ । ଉକ୍ତ ଗବେଷଣା କେନ୍ଦ୍ରରେ ହରିପାଙ୍ଗୀଙ୍କ ପରିବାରର ପାଂଚପିଢ଼ି ବିନାମୂଲ୍ୟରେ ଏହି ଚିକିତ୍ସା କାର୍ଯ୍ୟ କରି ଲୋକଙ୍କ ସେବା କରିଆସୁଛନ୍ତି ।

ମାଳି ପର୍ବତର ଅବସ୍ଥିତି ପୂର୍ବଘାଟ ପର୍ବତମାଳାରେ ହୋଇଥିବାରୁ ଏଠାରେ କ୍ରାନ୍ତିୟ ପୂର୍ଣ୍ଣମୋଚି ଅରଣ୍ୟ ତଥା ଆର୍ଦ୍ର ଜାତୀୟ ବୃକ୍ଷଲତା ଜଙ୍ଗଲ ଦେଖାଯାଏ । ଏଠି ବାର୍ଷିକ ୧୦୦ ରୁ ୨୦୦ ସେଣ୍ଟିମିଟରର ବର୍ଷା ରେକର୍ଡ କରାଯାଇଛି। ଏହି ଜଙ୍ଗଲରେ ବିଭିନ୍ନ ପ୍ରକାର ବୃକ୍ଷ ଦେଖିବାକୁ ମିଳେ। ଶାଳ, ଶିସୁ, ମହୁଲ, ଆମଳା, ଶିମିଳି, କୁସୁମ, ଚନ୍ଦନ, ଇତ୍ୟାଦି ଏହି ଜଙ୍ଗଲରେ ଦେଖା ଯାଉଥିବା ମୁଖ୍ୟ ଗଛ।

**ଜୀବନ ଜିବୀକା :-**

ମାଳି ପର୍ବତର ଚତୁପାଶ୍ୱର୍ରେ ବସବାସ କରୁଥିବା ଅଧିବାସୀମାନେ ସଂପୂର୍ଣ୍ଣ ଭାବରେ ଚାଷ ଉପରେ ନିର୍ଭର କରନ୍ତି । ପାହାଡ଼ରୁ ବାହାରିଥିବା ଝରଣା, ଚାଷ ପାଇଁ

ମୁଖ୍ୟତଃ ଜଳ ଯୋଗାଇଥାଏ ।  ବର୍ଷା ଉପରେ ବିଷେଶ ଭାବରେ ନିର୍ଭର କରିବାକୁ ପଡି ନଥାଏ । ପୋଡୁ ଚାଷ ହଉଛି ଆଦିବାସୀମାନଙ୍କ ଦ୍ୱାରା ବ୍ୟବହୃତ ଏକ ପାରମ୍ପରିକ ଚାଷ ପ୍ରଣାଳୀ । ଯେଉଁଠାରେ ଫସଲ ପାଇଁ ଜମି ଯୋଗାଇବା ପାଇଁ ପ୍ରତିବର୍ଷ ଜଙ୍ଗଲ ବିଭିନ୍ନ ସ୍ଥାନ ସଫା କରି ଚାଷ କରାଯାଏ। ଭୂମିହୀନତା ଯୋଗୁଁ ଲୋକଙ୍କୁ ପୋଡୁ ଚାଷ ଉପରେ ନିର୍ଭର କରିବାକୁ ପଡିଥାଏ। ପ୍ରକୃତିରେ ଲୋକମାନଙ୍କର ଏକମାତ୍ର ବୃତ୍ତି ହେଉଛି କୃଷି ଏବଂ ଜଙ୍ଗଲ ଉତ୍ପାଦ ସଂଗ୍ରହ। ସାଧାରଣତଃ ଏକ ସହାୟକ ବୃତ୍ତି ଭାବରେ ଆଦିବାସୀମାନେ ପୋଡୁ ଚାଷର ଆଶ୍ରୟ ନେଇଥାନ୍ତି । ଜଙ୍ଗଲ ମୃତ୍ତିକା ସଂରକ୍ଷଣ ପାଇଁ ସେମାନେ କେତେକ ସ୍ୱତନ୍ତ୍ର ଯାଗାରେ ହିଁ ପୋଡୁଚାଷ କରିଥାନ୍ତି । ଏହା ବ୍ୟତୀତ ପାହାଡ଼ର ପାଦଦେଶରେ ଥିବା ସମତଳ ଭୂମିରେ ସେମାନେ ତାଙ୍କର ମୁଖ୍ୟ ଚାଷ କରିଥାନ୍ତି । ପାରମ୍ପରିକ କୃଷି ପ୍ରଣାଳୀରେ ଚାଷ କରିଥିବାରୁ ଖାଦ୍ୟ ନିରାପତ୍ତା, ଜୈବ ବିଭିଧତା, ସ୍ୱଦେଶୀ ଜ୍ଞାନ ଓ ସାଂସ୍କୃତିକ ବିଭିଦତାକୁ ପ୍ରସାହିତ କରିବା ସହ ଜୈବିକ ଖାଦ୍ୟ ଉତ୍ପାଦନରେ ସାହାଯ୍ୟ କରିଥାଏ ।

ଚାଷ ମଧ୍ୟରେ ଧାନ, ମାଣ୍ଡିଆ, ମକା, ସୁଆଁ, କାନ୍ଦୁଲ, ବାଡୁ, କାଙ୍ଗୋ, ବିରି, କୋଳଥ, ଅଳସୀ, ବଡ଼ ମାଣ୍ଡିଆ, ପାଲି ମାଣ୍ଡିଆ, ବଡ଼ ସୁଆଁ, ମାମିସୁଆଁ ଖାକରା ସୁଆଁ, ବାଲିଆ ସୁଆଁ, ସିପୁଟି, ଇତ୍ୟାଦି ଶସ୍ୟ ତଥା ଡାଲିଜାତୀୟ ଶସ୍ୟ ଉତ୍ପାଦନ ହୋଇଥାଏ ।

## ପନିପରିବା ଚାଷ :-

ଶସ୍ୟ ଓ ଡାଲି ଉତ୍ପାଦକୁ ଛାଡି ଏଠାରେ ଭଳି କି ଭଳି ପନିପରିବା ମଧ୍ୟ ବର୍ଷ ତମାମ ଚାଷ ହୋଇଥାଏ । ଓଡିଶାର ବିଭିନ୍ନ ପ୍ରାନ୍ତ ସହ ପ୍ରାନ୍ତିୟ ରାଜ୍ୟମାନଙ୍କୁ ମଧ୍ୟ ପନିପରିବା ରପ୍ତାନୀ ହୋଇଥାଏ । ଏହା ଏ ଅଂଚଳର ଅଧିବାସୀମାନଙ୍କର ଅର୍ଥନୀତିର ଏକ ମୁଖ୍ୟ ଧାରା ।

ପନିପରିବା ମାନଙ୍କ ମଧ୍ୟରେ ଅଦା, ଆଳୁ ବିନ୍ସ୍, ପାତଲଘଣ୍ଟା, ବନ୍ଧାକୋବି, ଫୁଲ କୋବି, ଗଣ୍ଠି କୋବି, ମୁଳା, ଗାଜର, ମରିଚ, ବାଇଗଣ, କାନ୍ଦମୁଳ, ବାଦାମ, ମଟର, ଜହ୍ନୀ, କଲରା, କାକୁଡ଼ି, କୁନ୍ଦୁରୁ ପୋଟଳ, ଶିମ୍ବ, ଖମ୍ବଆଳୁ, ସାରୁ, ପିଆଜ, ରସୁଣ, ହଳଦୀ କଦଳୀ, ଆଖୁ, ଅମୃତ ଭଣ୍ଡା, କଲମିଆମ୍ବ, ଧନିଆପତ୍ର, ପଣସ, ଇତ୍ୟାଦି ଚାଷ ହୋଇଥାଏ।

ସାଗମାନଙ୍କ ମଧ୍ୟରେ ଭାଜି ସାଗ, ପାଳଙ୍ଗ ସାଗ, ମେଥିସାଗ, ସୁନୁ ସୁନିଆ, ଲେଉଟିଆ ସାଗ, ବହଲ ସାଗ, ଖଡ଼ା ସାଗ, ସାରୁ ସାଗ, କଳମ ଶାଗ,  ନହଙ୍ଗା, ପୋଇ ଶାଗ, ମୁଠିଶାଗ, ପିତା ସାଗ, ଚଣା ଶାଗ, ବା ଖେସାରୀ, ପୁରୁଣି, ହିଡ଼ମିଚା, ଅମ୍ବିଳିତି, କଂଚନ ଶାଗ, ସଜନା ଶାଗ ସବୁ ଉତ୍ପାଦନ ହେଇଥାଏ।

ଆଦିବାସୀମାନେ ସେମାନଙ୍କର ବିଭିନ୍ନ ଚାଷ ପାଇଁ କୌଣସି ରାସାୟନୀକ

ସାର, କୀଟ ନାଶକ ବ୍ୟବହାର ନକରି ନିଜର ପାରମ୍ପରିକ ଜ୍ଞାନ କୌଶଳ ବ୍ୟବହାର କରିଥାନ୍ତି । ଫଳରେ ମୃତ୍ତିକାର ଉର୍ବରତା ବାଜୟ ରହିଥାଏ । ଯେମିତି ଗୋଟିଏ ଚାଷ ଜମିରେ ବାରମ୍ବାର ଗୋଟିଏ ପ୍ରକାର ଚାଷ ନ କରି ଅଲଗା ଅଲଗା ଚାଷ ଅମଳ କରନ୍ତି । ଏହି ପାରମ୍ପରିକ ଜ୍ଞାନକୁ ପିଢ଼ି ପିଢ଼ି ଧରି ଚାଷରେ ପ୍ରୟୋଗ କରି ଆସୁଛନ୍ତି। ଗୋଟିଏ ବର୍ଷରେ ଦୁଇଥର ଚାଷ ଉତ୍ପାଦନ କରନ୍ତି ।  ନିଜର ଜୀବନ ଜୀବିକା ପାଇଁ ସ୍ଥାନୀୟ ଜଙ୍ଗଲ, ଝରଣା, ନଦୀ ପାହାଡ଼ର ବର୍ଷ ତମାମ ନିର୍ଭର କରୁଥିବା ଯୋଗୁଁ ଆଦିବାସୀମାନେ ପ୍ରକୃତିକୁ ଦେ'ଦେବତା ଭାବେ ପୂଜା କରି ଆସୁଛନ୍ତି।

## ଜନସଂଖ୍ୟା

ସିମିଲିଗୁଡ଼ା ହେଉଛି କୋରାପୁଟ ଜିଲ୍ଲାର ଏକ ବ୍ଲକ୍। ଏହି ବ୍ଲକ୍ ର ଚାରୋଟି ପଞ୍ଚାୟତ ମାଳିପର୍ବତର ଚତୁପାଶ୍ୱର୍ରେ ଅବସ୍ଥିତ । ଏହି ଚାରୋଟି ପଞ୍ଚାୟତରେ ୪୪ଟି ଗ୍ରାମ ରହିଛି ।

## ଅଧିବାସୀ :-

ଦକ୍ଷିଣ ଓଡିଶାର କୋରାପୁଟର ଜିଲ୍ଲାଟି ଆଦିବାସୀ ବହୁଳ। ଏହି ଜିଲ୍ଲାରେ ଭିନ୍ନ ଭିନ୍ନ ଆଦିବାସୀ ବାସ କରନ୍ତି। ପ୍ରତ୍ୟେକ ନିଜର ପାରମ୍ପରିକ ଭାଷା ଓ ସଂସ୍କୃତି ସହ ସ୍ଥାନୀୟ ପରିବେଶ ଯୋଡି ହେଇ ବର୍ଷ ବର୍ଷ ହେଲା ଜୀବନ ଧାରଣ କରି ଆସୁଛନ୍ତି। ବିଭିନ୍ନ ସଂପ୍ରଦାୟର  ଭାଷା ଓ ସଂସ୍କୃତି ପରମ୍ପରା ଅଲଗା ଅଲଗା ହେଲେ ବି ସେମାନେ ଦୀର୍ଘଦିନ ହେଲା ଶାନ୍ତି ସହାବସ୍ଥାନ କରି ଆସୁଛନ୍ତି। ଏହି ଅଂଚଳରେ ଦେଖାଯାଉଥିବା ବିଭିନ୍ନ ସଂପ୍ରଦାୟ ମଧ୍ୟରେ ପରଜା, କନ୍ଧ, ମାଲି, ଡମ୍, ଗଦବା, ସଉଁରା, ଦୁଲିଆ, ଭୂମିଆ, ଶବର ଇତ୍ୟାଦି ପ୍ରମୁଖ।

## ପରଜା :-

ପରଜା ହେଉଛି ଏକ ଜଣାଶୁଣା ଆଦିବାସୀ ସଂପ୍ରଦାୟ । ଏ ଅଂଚଳରେ ସାଧାରଣତଃ ଏମାନେ ଚାଷ ଉପରେ ନିର୍ଭର କରନ୍ତି । ଏମାନେ ମୁଖ୍ୟତ ପରଜା ଭାଷା କହିଥାନ୍ତି । ପରଜାମାନଙ୍କର ଅନେକ ସାମାଜିକ ସଂସ୍କୃତିକ ବୈଶିଷ୍ଟ୍ୟ ଯାହା ବିଭିନ୍ନ ପଡ଼ୋଶୀ ଜନଜାତି ଯଥା-: ଗଣ୍ଡ, କନ୍ଧ, ଗାଡ଼ବା ଇତ୍ୟାଦିଙ୍କ ସହ ଅନେକ ସାମଞ୍ଜସ୍ୟ ଦେଖାଯାଏ । ଅନ୍ୟ ଜନଜାତି ମାନଙ୍କ ତୁଳନାରେ ଏମାନଙ୍କର ପରିଧାନ, ଅଳଙ୍କାର, ବେଷଭୂଷା, ଧାର୍ମିକ ବିଶ୍ୱାସ ଜୀବନ ଶୈଳିରେ ସାମାନ୍ୟ ବ୍ୟତିକ୍ରମ ଦେଖା ଦେଉଥିଲେ ହେଁ ସେମାନେ ମିଳିମିଶିକି ରହନ୍ତି ।

ଗଦବା :-

ଗଦବା ସଂସ୍କୃତି ହେଉଛି ଓଡ଼ିଶାର ଆଦିବାସୀ ସଂପ୍ରଦାୟ ମଧ୍ୟରେ ଏକ ମୁଖ୍ୟ ସଂସ୍କୃତି । ଜଣାଯାଏ ଯେ, ଗୋଦାବରୀ ନଦୀ ଉପକୂଳରୁ ଆସିଥିବାରୁ ଏମାନଙ୍କୁ ଗଦବା ଜନଜାତି ବୋଲି କୁହାଯାଏ । ଗଦବାମାନେ ସାଧାରଣତଃ ଚାଷ ଓ ଜଙ୍ଗଲ ଉପରେ ନିଜ ଜୀବିକା ପାଇଁ ନିର୍ଭରଶିଳ ।

କନ୍ଧ :-

କନ୍ଧ ହେଉଛି ଓଡିଶା ଏବଂ ଓଡିଶାର କୋରାପୁଟ ଜିଲ୍ଲାରେ ଏକ ମୁଖ୍ୟ ଓ ସବୁଠୁ ପୁରୁଣା ଜନଜାତି । ପାରମ୍ପରିକ ଭାବେ ଏମାନେ ଏକ ଶିକାରୀ ସଂପ୍ରଦାୟ । ଶିକାର ସହିତ ଏମାନେ ଚାଷ ଉପରେ ବି ନିର୍ଭରଶୀଳ । କୁଇ ହେଉଛି ଏମାନଙ୍କର ମୁଖ୍ୟ ଭାଷା ।

ଶବର :-

ଶବର ସଂପ୍ରଦାୟ ଓଡିଶାର ପ୍ରାଚୀନ ଜନଜାତିମାନଙ୍କ ମଧ୍ୟରୁ ଅନ୍ୟତମ। ଓଡିଶାରେ ଏମାନଙ୍କୁ ବିଭିନ୍ନ ନାମରେ ଜଣାଯାଏ ଯେମିତି ଶବର, ସଉରା, ସୋରା, ସହରା, ଏମାନେ ସାଧାରଣତଃ ପର୍ବତରୋହୀ ଶିକାରୀ । ସଉରାମାନେ ନିଜର ଜୀବନ ଜୀବିକା ପାଇଁ ଜମି ଜଙ୍ଗଲ ଉପରେ ନିର୍ଭର କରନ୍ତି ।

ଦୁଲିଆ :-

ଦୁଲିଆମାନେ ହେଉଛନ୍ତି ଏକ ଛୋଟ ଗୋଷ୍ଠି । ସେମାନଙ୍କର ଶାରିରୀକ ରୂପ ଦ୍ୱାରା ଅନ୍ୟ ଜନଜାତିଙ୍କ ଠାରୁ ସାମାନ୍ୟ ଭିନ୍ନ । ଏମାନେ କେବଳ ଏହି କୋରାପୁଟ ଅଂଚଳରେ ହିଁ ଦେଖାଯାନ୍ତି । ଚାଷ ଏମାନଙ୍କ ମୁଖ୍ୟ କାର୍ଯ୍ୟ ।

ଡମ୍ :-

ଡମ୍‌ମାନେ ଓଡିଶାରେ ସାଧାରଣତଃ ଅନୁସୂଚିତ ଜାତି ତାଲିକାରେ ଅନ୍ତର୍ଭୁକ୍ତ । କିନ୍ତୁ କୋରାପୁଟର ମାଳିପର୍ବତ ଅଂଚଳରେ ଅନ୍ୟ ସବୁ ଜନଜାତିଙ୍କ ସହ ମିଶି ରହନ୍ତି । ଏମାନେ ନିଜ ଜୀବନ ଜୀବିକା ପାଇଁ ପାରମ୍ପରିକ ବାଦ୍ୟଯନ୍ତ୍ର ବଜାନ୍ତି । ଏମାନେ ହେଉଛନ୍ତି ଭାରତ ବର୍ଷରେ କଳା ସଂପନ୍ନ ଜାତି । ଏବଂ ଚାଷ ମଧ୍ୟ କରି ଜୀବିକା ନିର୍ବାହ କରନ୍ତି । ଡମ୍ ମାନଙ୍କର ନିଜସ୍ୱ ଭାଷା ମଧ୍ୟ ଅଛି ଯାହାକୁ 'ଡମ୍ଭାଷା' କୁହାଯାଏ ।

ମାଲି :-

ମାଲି ସଂପ୍ରଦାୟ ପାରମ୍ପରିକ ଚାଷ କରନ୍ତି। ଝରଣା ପାଣିକୁ ଜଳ ସେଚନ କରି ଏମାନେ ବିଭିନ୍ନ ପ୍ରକାର ପନିପରିବାର ଉତ୍ତମ ଫସଲ ଯୋଗାଇବାରେ ସକ୍ଷମ ଅଟନ୍ତି ।

## ସାମାଜିକ ଗଠନ :-

ମାଳି ପର୍ବତ ପାଦଦେଶର ଗାଁମାନଙ୍କର ସାମାଜିକ ଗଠନ ଓ ପ୍ରଶାସନିକ ସଂରଚନା ଜାନି, ମୁଦୁଲି, ଦିସାରୀ, ଗୁନିଆଁ ଗୁରୁମାଇଁ, ଇତ୍ୟାଦିଙ୍କୁ ନେଇ ଗଠିତ ।

## ଜାନି :-

ଜାନି ବଂଶାନୁକ୍ରମିକ ଭାବେ ଗାଁରେ ପୁରୋହିତ କାମ କରନ୍ତି । ସେ ଗାଁର କଲ୍ୟାଣର ରକ୍ଷକ ତଥା ଗାଁର ଦେ, ଦେବତା, ପୂଜା ପାଠ ଦାୟିତ୍ୱ ନିଅନ୍ତି। । ଜାନି କୁ ଗାଁର ସବୁଠୁ ଧର୍ଯ୍ୟବାନ ଓ ଦାୟୀତ୍ୱବାନ ମଣିଷ ଭାବେ ଗଣାଯାଏ ।

## ମୁଦୁଲି :-

ଜାନି ପରେ ମୁଦୁଲି ହେଉଛି ଗାଁର ମୁଖିଆ। ଗାଁ ଓ ଆଦିବାସୀ ସଂପ୍ରଦାୟର ନେତା ତଥା ସର୍ବେସର୍ବା ବୋଲି ଧରାଯାଏ । ପାରମ୍ପରିକ ରିତିରେ ଗାଁକୁ ପରିଚାଳନା କରିବା ଏମାନଙ୍କ ବଂଶାନୁକ୍ରମିକ କାର୍ଯ୍ୟ ।

## ଦିସାରୀ :-

ଦିସାର ହେଉଛି ଗାଁର ନଦାନ କର୍ମଚାରି । ମନ୍ଦଆତ୍ମା ଗ୍ରାମକୁ କ୍ଷତି ପହଞ୍ଚାଉଥିବା ତଥା ଗାଁ'ର ରୋଗ ଦୁଃଖ ବିଷୟ ଗୁଡିକକୁ ସେ ପ୍ରତିରୋଧ କରନ୍ତି । ଅନୁରୋଧ କ୍ରମେ ସେ ଅଲଗା ଗାଁ ପାଇଁ ମଧ୍ୟ କାର୍ଯ୍ୟ କରନ୍ତି । ବେଳେ ବେଳେ ପାରିବାରିକ କଳହରେ ମଧ୍ୟ ହସ୍ତକ୍ଷେପ କରନ୍ତି । ଗ୍ରାମ ଏବଂ ବିଭିନ୍ନ ସଂପ୍ରଦାୟର ଉତ୍ସବର ଏବଂ ପରିବାରର ବିଭିନ୍ନ ସାମାଜିକ କାର୍ଯ୍ୟ ପାଇଁ ଶୁଭ ତାରିଖ ଓ ସମୟ ନିର୍ଦ୍ଧାରଣ କରନ୍ତି ।

## ଗୁନିଆ :-

ଗୁନିଆମାନେ ଦିଶାରୀର ପରାମର୍ଶରେ କାମ କରନ୍ତି । ପାରମ୍ପାରିକ ଢ଼ଙ୍ଗରେ ବିଭିନ୍ନ ମନ୍ତ୍ର ଉଚ୍ଚାରଣ କରି ଲୋକଙ୍କ ଯନ୍ତ୍ରଣା ରୋଗ ଇତ୍ୟାଦି ଭଲ କରିବାକୁ ଚେଷ୍ଟା କରନ୍ତି । ସେମାନେ ସେମାନଙ୍କ ସେବା ପାଇଁ ରୋଗୀଙ୍କଠୁ ଚାଉଳ, କୁକୁଡା, ମଦ ଇତ୍ୟାଦି ଦକ୍ଷିଣା ଆକାରରେ ଗ୍ରହଣ କରନ୍ତି ।

## ମହିଳା ମାନଙ୍କସ୍ଥିତି :-

ଆଦିବାସୀଙ୍କ ମଧ୍ୟରେ ସାମାଜିକ, ଅର୍ଥନୈତିକ ଓ ସଂସ୍କୃତିକ ମହିଳାମାନେ ପ୍ରାୟତଃ ପରିବାରର ସମସ୍ତ କାର୍ଯ୍ୟ କଳାପ ସହ ଚାଷ ଜମିରେ ମଧ୍ୟ ନିଜର ଉପସ୍ଥିତି ଜାହିର କରିଥାନ୍ତି, ଯାହାଦ୍ୱାରା ପୁରୁଷମାନଙ୍କୁ କେବଳ ସାମାଜିକ ଭାବରେ ନୁହେଁ ଆର୍ଥିକ ଦୃଷ୍ଟି ମଧ୍ୟ ସାହାଯ୍ୟ କରିଥାନ୍ତି । ମାଳି ପର୍ବତ ଅଂଚଳରେ ଦେଖାଯାଏ ଯେ ଅଧିକାଂଶ କୃଷି କାର୍ଯ୍ୟ, ଜଙ୍ଗଲରୁ ଜାତ ଦ୍ରବ ଯଥା- ପତ୍ରରୁ ଖଲି ଓ ଦନାର ତିଆରି, ଜଙ୍ଗଲରୁ ଘରେ

ବ୍ୟବହୃତ ଝାଡୁ, ମହୁଲ, ଟୋଲ ଚାର, କେନ୍ଦୁ, କାଠ, କାଠି, ପଟି, ମସିଣା ଆଦି ନିକଟସ୍ଥ ବଜାରକୁ ନେଇ ବିକ୍ରି କରିବା ଭଳି କାର୍ଯ୍ୟ ମହିଳାମାନଙ୍କ ଦ୍ୱାରା ହେଇଥାଏ।

ଆଦିବାସୀ ଜନଜାତିରେ ମହିଳାମାନଙ୍କ ପ୍ରତି ଘୃଣା, ଅତ୍ୟାଚାର, ଉଦାସିନତା, ଏ ସବୁ ପରିଲକ୍ଷିତ ହୁଏ ନାହିଁ । ଉଭୟ ମହିଳା ଓ ପୁରୁଷ ସମାନ ସୁବିଧା ସୁଯୋଗ ଉପଭୋଗ କରନ୍ତି । ଯଦିଓ ପାହାଡି ଅଂଚଳରେ ଆଦିବାସୀ ମହିଳାମାନେ ପଛୁଆ ଓ ଅଶିକ୍ଷିତ ଗଣାଯାଏ ତଥାପି ତାଙ୍କ ଜୀବନ ଶୈଳି ମୁଖ୍ୟସ୍ରୋତରେ ରହୁଥିବା ମହିଳାମାନଙ୍କ ଠାରୁ ବିଶେଷ ଉର୍ଦ୍ଧ୍ୱରେ ।

ପରଜା ସଂପ୍ରଦାୟରେ ମହିଳା ଓ ପୁରୁଷ ମାନଙ୍କ ମଧ୍ୟରେ କୌଣସି ଜଟିଳ ଶ୍ରମ ବିଭାଜନ ଦେଖାଯାଏ ନାହିଁ । ପୁରୁଷମାନେ ଓଜନିଆ ସବୁ କାମକୁ ଗୁରୁତ୍ୱ ଦେଉଥିବା ବେଳେ ମହିଳାମାନେ, ଧାନ ରୋପିବା, ଧାନକାଟିବା, ଧାନ ବୋହିବା ଜଙ୍ଗଲରୁ କାଠ ସଂଗ୍ରହ କରିଥାନ୍ତି । ଜଙ୍ଗଲ ବଞ୍ଚେଇବାରେ ମହିଳାମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଅଛି ।

## ଆଦିବାସୀ ସଂସ୍କୃତି :-

ମାଳି ପର୍ବତ ଅଂଚଳରେ ବସବାସ କରୁଥିବା ଆଦିବାସୀମାନଙ୍କ ସାଂସ୍କୃତିକ ଦିଗ ଅନ୍ୟ ସଂପ୍ରଦାୟଠାରୁ ବହୁତ ଅଲଗା । ସେମାନଙ୍କର ବିଶ୍ୱାସ, ରୀତିନୀତି, ମୂଲ୍ୟବୋଧ, ପାରମ୍ପରିକ ଏବଂ ମାନବୀୟ ଅଟେ । ସେମାନେ ଉଭୟ ପିତୃସତ୍ତା ଓ ମାତୃସତ୍ତା ଉପରେ ବିଶ୍ୱାସ କରନ୍ତି ଏବଂ ପରିବାର ଭିତରେ ବିଶେଷ ଲିଙ୍ଗଗତ ଭେଦଭାବ ଦେଖାଯାଏ ନାହିଁ । ଏଠି ବସବାସ କରୁଥିବା ଜନଜାତି ମାନଙ୍କ ନିଜସ୍ୱ ପାରମ୍ପରିକ ନାଚ, ଗୀତ ବଜା, ଭାଷା, ଜୀବନ ଶୈଳୀର ଏକ ସମୃଦ୍ଧ ସାଂସ୍କୃତି ଐତିହ୍ୟ ଦିର୍ଘଦିନରୁ ରହିଆସୁଛି ।

## ବିହାବର୍ଦ୍ଧନ :-

ଏହି ଆଦିବାସୀ ସଂପ୍ରଦାୟମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାରର ବୈବାହିକ ପରମ୍ପରା ଦେଖାଦିଏ ଯଥା-: ଉଧଲିଆ ବିଭା, ଘିଚା ବିଭା, ମଙ୍ଗନି ବିଭା, କନିଆଁ ବଟା, ପଏସାମୁଡି ବିଭା ଇତ୍ୟାଦି । ଆଦିବାସୀମାନଙ୍କ ବାହାଘରରେ ପୁଅ ଘରଲୋକ ଝିଅକୁ କିଣନ୍ତି ଓ ପ୍ରତିବଦଳରେ ଝିଅ ଘରଲୋକ ମଦ, କୁକୁଡା ଆଉ କିଛି ପଇସା ଦିଅନ୍ତି । ଏ ସବୁ ରୀତିନୀତି, ଦିସାରୀ ଦେଖାରେଖା କରନ୍ତି ବଦଳରେ କଳା ଗଂଜା କୁକୁଡା ଦିଅନ୍ତି ।

## ଜନ୍ମମୃତ୍ୟୁ :-

ଏମାନଙ୍କ ମୃତ୍ୟୁରେ ଶବକୁ ଉଭୟ ପୋତାଯାଏ ପୋଡାଯାଏ ମଧ୍ୟ ଏବଂ ମୃତମାନଙ୍କ ଆତ୍ମାକୁ ସନ୍ତୁଷ୍ଟ କରିବା ପାଇଁ ଚାଉଳ, ମଦ, ଭାତ, ହଳଦୀ ଇତ୍ୟାଦି ପ୍ରଦାନ କରାଯାଏ । ମୃତ୍ୟୁ ସମାରୋହକୁ ଏମାନେ ୧୦ ଦିନ ପର୍ଯ୍ୟନ୍ତ ମାନିଥାନ୍ତି । ଯେମିତିକି ମୃତ୍ୟୁର ତୃତୀୟ ଦିନକୁ ବିତାଛୁଇଁବା କୁହାଯାଏ । ୧୦ ତମ ଦିନକୁ କାର୍ଯ୍ୟ ବୋଲି

କହୁାଯାଏ । କାର୍ଯ୍ୟଦିନ ପରିବାର ସମସ୍ତ ସଂପର୍କିୟ ଉପସ୍ଥିତ ରହନ୍ତି । ମୃତ୍ୟୁ ଭୋଜି ମଧ୍ୟ ଦିଆଯାଏ । ଏସବୁ କାର୍ଯ୍ୟ ଜାନି, ଦିସାରୀ ଏମାନଙ୍କ ଉପସ୍ଥିତି ଓ ନୀରିକ୍ଷଣରେ ହୋଇଥାଏ।

ନବଜାତ ଶିଶୁ ଜନ୍ମରେ ୨୧ ତମ ଦିନରେ ଏକୋଶିଆ ଏବଂ ନାମକରଣ ଉତ୍ସବ ପାଳିତ ହୁଏ । ଏହି ସମୟରେ ପରିବାର ଲୋକ ନିଜର ପିତୃପୁରୁଷଙ୍କୁ ଉପସନା କରନ୍ତି ଏବଂ ନବଜାତ ଶିଶୁଙ୍କୁ ଆଶିର୍ବାଦ କରନ୍ତି ।

## ନାଚ, ଗୀତ ଓ ଜାନିଯାତ୍ରା :-

ଲୋକଗୀତ, ଲୋକନୃତ୍ୟ, ଜାନିଯାତ୍ରା ପରବ ଇତ୍ୟାଦି ଆଦିବାସୀମାନଙ୍କର ଅଭିଚ୍ଛେଦ୍ୟ ଅଙ୍ଗ । ସେମାନେ ଯୋଡି କିମ୍ବା ଏକକ ପରିବର୍ତ୍ତେ ଦଳରେ ସାମୁହିକ ଭାବେ ଗୀତ ଓ ନୃତ୍ୟ ପରିବେଷଣ କରିବାକୁ ପସନ୍ଦ କରନ୍ତି । ସେମାନଙ୍କର ନିଜସ୍ୱ ଅନେକ ପ୍ରକାର ବାଦ୍ୟ ଯନ୍ତ୍ର ରହିଅଛି । ନୃତ୍ୟ ଓ ଗୀତ ପରିବେଷଣ ସମୟରେ ବାଦ୍ୟ ଯନ୍ତ୍ର ଗୁଡିକ ନିଜ ଶରୀର ଶହ ବାନ୍ଧି ସମାନ୍ତରଳ ଭାବରେ ନାଚ ସହ ଗୀତ ମଧ୍ୟ ଗାଇଥାନ୍ତି । ସେମାନେ ବର୍ଷ ତମାମ୍ ବିଭିନ୍ନ ପ୍ରକାର ପର୍ବ ପାଳନ କରିଥାନ୍ତି । ସେମାନଙ୍କ ମଧ୍ୟରୁ ଚଇତ୍ ପରବ, ପୁଷ୍ ପରବ, ଘଣ୍ଟ ପରବ, ନୂଆଁଖାଇ ଛେର୍ ଛେରା ଇତ୍ୟାଦି ଅନ୍ୟତମ ।

ଏହି ପରବ ଗୁଡିକରେ ସମସ୍ତେ ନିଜ ନିଜର ପାରମ୍ପରିକ ପୋଷାକ ଓ ଅଳଙ୍କାର ପିନ୍ଧି ଦଳଗତ ଭାବରେ ନାଚ ଗୀତ କରନ୍ତି । ଏହି ଅଂଚଳରେ ପ୍ରାୟ ସମସ୍ତ ଜନଜାତି ପୁଷ ପରବ ଓ ଚୈତ ପରବକୁ ମୁଖ୍ୟ ପରବ ଏବଂ ଢ଼େମ୍ସା ନାଚକୁ ଲୋକ ପ୍ରିୟ ନୃତ୍ୟ ବୋଲି ବିବେଚନା କରନ୍ତି ।

## ଚୈତ ପର୍ବ :-

ଇଂରାଜୀ ବର୍ଷର ମାର୍ଚ୍ଚ ଓ ଏପ୍ରିଲ ମାସକୁ ଚୈତ୍ର ମାସ ବୋଲି ଧରାଯାଏ । ଏହି ମାସ ସାରା ଚୈତ୍ର ପର୍ବ ପାଳନ କରନ୍ତି । ଚୈତ୍ର ମାସରେ ମାସତମାମ ଭୋଜି, ପ୍ରତ୍ୟେକ ଦିନ ରାତିସାରା ନାଚଗୀତ ଏବଂ ଅବିବାହିତ ପୁରୁଷମାନେ ଶିକାର ପାଇଁ ଜଙ୍ଗଲକୁ ଯାନ୍ତି । ଜଙ୍ଗଲକୁ ଶିକାର କରିଯିବା ଅଭିଯାନକୁ ବେଣ୍ଟ ପରବ ବୋଲି କହନ୍ତି। ଏହି ସମୟରେ ମା'ମାନେ "ଟଡେଇ" ଗୀତ ଗାଇଥାନ୍ତି । ଟଡେଇ ଗୀତର ଅର୍ଥ ହେଲା ମା'ମାନେ ନିଜ ପୁଅକୁ ଗାଳି ଦେଇଥାନ୍ତି ।

## ପୁଷ ରବ :-

ପୁଷ୍ ପରବ ପୌଷ ମାସରେ ପାଳନ କରାଯାଏ ଯେଉଁଥିରେ ପୁରୁଷ, ମହିଳା, ଛୁଆମାନେ ସମସ୍ତେ ଅଂଶ ଗ୍ରହଣ କରିଥାନ୍ତି । ପାରମ୍ପରିକ ରୀତିନୀତିରେ କୁକୁଡ଼ା, ଛେଳି,

ପୋଢ଼ ଆଦି ବଳି ଦେଇଥାନ୍ତି ।

ପାରମ୍ପରିକ ରୀତିନିତୀ ପରେ ଗୋଟେ କାଠ ବଡ଼ ଗଣ୍ଡି ଜଳାଯାଏ ଏବଂ ଲୋକମାନେ ଘେରି ହୋଇ ନାଚନ୍ତି । ଏହି ପର୍ବରେ ପରଜା, ଡମ୍, କନ୍ଧ, ସଉରା, କମାର, କୁମ୍ଭାର ପ୍ରାୟ ସବୁ ସଂପ୍ରଦାୟର ଲୋକ ମିଶି ପର୍ବ ପାଳନ କରନ୍ତି ।

ଘଣ୍ଟପରବ :-

ବୈଶାଖ ମାସରେ ତିନିଦିନ ପାଇଁ ଘଣ୍ଟପରବ ପାଳନ କରାଯାଏ । ଘଣ୍ଟର ଅର୍ଥ ହେଉଛି "ହାଣ୍ଡି" । ଏହି ପରବରେ ହାଣ୍ଡିରେ ଚାରୋଟି ପିଠା ଧରି ପ୍ରତ୍ୟେକ ହାଣ୍ଡିକୁ ଠାକୁରାଣୀ ପେନୁକୁ ଦିଆଯାଏ । ଏହି ପର୍ବ ପାଳନ ଦ୍ୱାରା ବସନ୍ତ ଓ କଲରା ଭଳି ରୋଗରୁ ମୁକ୍ତ ମିଳେ ବୋଲି ବିଶ୍ୱାସ ଅଛି। କେତେକ ଅଂଚଳରେ ଏହି ପରବରେ ବିଭିନ୍ନ ପ୍ରକାର ବଳି ମଧ୍ୟ ଦିଆଯାଏ ।

ଆମ୍ବ ନୂଆଁ ଖାଇ ପରବ :-

ମାର୍ଚ୍ଚ ମାସରେ ଆମ୍ବ ନୂଆଁ ଖାଇ ପରବ ସ୍ଥାନୀୟ ଅଧିବାସୀମାନଙ୍କ ମଧ୍ୟରେ ଅନୁଷ୍ଠିତ ହୋଇଥାଏ । ଏହି ପରବରେ ସେମାନେ ନିଜ ଗାଁ ଦେ, ଦେବତା ତଥା ପ୍ରକୃତିକୁ ପୂଜା କରିବାପରେ ବର୍ଷର ପ୍ରଥମ ଆମ୍ବ ଖାଇଥାନ୍ତି । ଏହା ଗୋଷ୍ଠିଗତ ଭାବେ ପାଳନ ନକରି ବ୍ୟକ୍ତିଗତ ଭାବେ ନିଜ ଘରେ ପାଳନ କରାଯାଇ ଥାଏ ।

ନୂଆଁ ଖାଇ ପରବ :-

ପଶ୍ଚିମ ଓଡ଼ିଶାର ତଥା ଆଦିବାସୀ ସଂପ୍ରଦାୟ ମାନଙ୍କରେ ଏକମାତ୍ର ମୁଖ୍ୟ ପର୍ବ। ଏହି ପର୍ବରେ ଅମଳ ହେଇଥିବା ଧାନକୁ ନିଜର ଦେ ଦେବତାକୁ ଦେଇଥାନ୍ତି ଏବଂ ପୂଜା ଅର୍ଚ୍ଚନା ପରେ ନିଜେ ମଧ୍ୟ ଖାଇଥାନ୍ତି ।

ନାଚ ଗୀତ :-

ଏ ଅଂଚଳରେ ଆଦିବାସୀମାନଙ୍କର ବିଭିନ୍ନ ନୃତ୍ୟ ସଂଗୀତ ଏମାନଙ୍କ ପରିଚୟର ମୁଖ୍ୟ ଅଙ୍ଗ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ନାଚ ଗୀତକୁ ଆଦିବାସୀମାନେ ନିଜ ଆତ୍ମା ତଥା ଭାବନାକୁ ପ୍ରକାଶ କରିଥାନ୍ତି । ନାଚ ଗୀତ ସମୟରେ ପାରମ୍ପରିକ ପରିଧାନ ଯଥା ମୁଣ୍ଡରେ ପଗଡି, ଫୁଲ, ପତ୍ର ଇତ୍ୟାଦି ଲଗେଇ ଥାନ୍ତି। ଏଥିରୁ ପ୍ରକୃତି ସହ ସେମାନଙ୍କ ସମ୍ପର୍କର ଗଭୀରତା ଅନୁମାନ କରିହୁଏ। ସେମାନେ ବର୍ଷର ବିଭିନ୍ନ ସମୟର ପର୍ବପର୍ବାଣୀ ଓ ସମାରୋହରେ ଭିନ୍ନ ଭିନ୍ନ ପ୍ରକାରର ଗୀତ ଓ ନାଚ ପ୍ରଦର୍ଶନ କରିଥାନ୍ତି ।

ନାଚ :-

ନାଚ ମାନଙ୍କ ମଧ୍ୟରେ ଚୈତ୍ରା ପାଟ୍, କୁଟ୍ରା ନାଟ୍, ଘୋଡ଼ା ନାଚ, ହାତୀ ନାଚ,

ଡୁଇଲି ନାଚ, ଢାଲି ହାଣ୍ଡି, ନାପ୍ରା ନାଚ, ଖଟି ନାଚ ଇତ୍ୟାଦି ମୁଖ୍ୟ ।

"ଢ଼େମ୍ସେ" ହେଉଛି କୋରାପୁଟ ଅଂଚଳର ଏକ ଲୋକପ୍ରିୟ ନୃତ୍ୟ । ଏହା କୋରାପୁଟର ତଥା ମାଳି ପର୍ବତ ଅଂଚଳର ପ୍ରତ୍ୟେକ ଗାଁରେ ପରିବେଷଣ କରାଯାଇଥାଏ। ଯାହା ପ୍ରକୃତରେ ବହୁତ ଆକର୍ଷଣୀୟ । ଏହା ଏକ ଗୋଷ୍ଠି ନୃତ୍ୟ ଯାହାକି ସମସ୍ତ ବୟସର ପୁରୁଷ ଓ ମହିଳାମାନଙ୍କୁ ନେଇ ଗଠିତ । ଢ଼େମ୍ସା ନାଚିବାବେଳେ ପରସ୍ପରର ହାତର ଆଙ୍ଗୁଠି ବାନ୍ଧି ବାଦ୍ୟ ଟିମ୍ କିଡି, ନିସାନ, ମୁହୁରୀ, ଢ଼ାପଡ଼ା ତାଳେ ତାଳେ ନୃତ୍ୟ ପରିବେଷଣ କରିଥାନ୍ତି ।

ଗୀତ :-

ଗୀତ ମାନଙ୍କ ମଧ୍ୟରେ କିନ୍ଦ୍ରି ଗୀତ, ଅଏଲି ଗୀତ, ନଦୀ ଦେବତା ଗୀତ, ଡୁଡୁଙ୍ଗା ଗୀତ, ଟଡେଇ ଗୀତ, ଢ଼େମ୍ସା ଗୀତ, ଚେର୍ଛେରା ଗୀତ ।

କିନ୍ଦ୍ରି ଗୀତ :-

ଗାଈ ଗୋରୁ ଚରେଇଲାବେଳେ ଗାଆନ୍ତି ।

ଅଏଲି ଗୀତ :-

ବାହା ସମୟରେ ଅଏଲି ଗୀତ ।

ଛେର୍ ଛେରା :-

ପୁଷ୍ ପୁନିରେ ଛେର୍ ଛେରା ଗୀତ ଗାଇଥାନ୍ତି ।

ଟଡେଇ ଗୀତ :-

ବେଣ୍ଟ ପରବରେ ଟଡେଇ ଗୀତ ଗୁଆ ଯାଇଥାଏ ।

ବାଡୁଆଗୀତ :-

ଗାଳି ଓ ଯୌନ ସମ୍ପର୍କୀୟ ଗୀତକୁ ସକାରାତ୍ମକ ଭାବେ ଗାଆନ୍ତି। ଏ ଗୀତ ମାନଙ୍କରେ ବ୍ୟବହାର ହେଉଥିବା ବାଦ୍ୟଯନ୍ତ୍ର ଗୁଡିକ ହେଲା ବଏଁଶି, ମୁହୁରୀ, ଡାପୁ, ଝୁମ୍ପା, କିର୍ଚି, ଡଙ୍ଗରା, ଢ଼ୋଲ, ଲିସାନ (ଡଗ୍ରା) ଗିନି, ଟିମିକିଡି ଇତ୍ୟାଦି।

ଦେ' ଦେବତା :-

ଆଦିବାସୀମାନେ ପ୍ରକୃତିର ଉପାସକ ଅଟନ୍ତି । ସେମାନେ ପ୍ରକୃତି ମଧ୍ୟରେ ନିଜର ଦେ' ଦେବତାର ଉପସ୍ଥିତି ଅନୁଭବ କରନ୍ତି । ସେମାନଙ୍କ ଜୀବନ ଜୀବିକା ତଥା ଜୀବନର ତମାମ୍ ଆବଶ୍ୟକୀୟ ଜିନିଷ ପାଇଁ ପ୍ରକୃତି ଉପରେ ନିର୍ଭର କରିଥାନ୍ତି। ମାଟି, ପୃଥିବୀ, ସୂର୍ଯ୍ୟ ଓ ଜଳକୁ ଜୀବନ ପ୍ରଦାନକାରୀ ହୋଇଥିବାରୁ ପୂଜା କରାଯାଏ ବୋଲି

ବିଶ୍ୱାସ କରନ୍ତି । ଏଠି ଆଶିର୍ବାଦ ପାଇଁ ପିତୃ ପୁରୁଷ, ପିଦର ବା ଡୁମାର ପୂଜା ଓ ସ୍ମରଣ କରିବାର ଧାର୍ମିକ ବିଶ୍ୱାସ ଅଛି। ଆଦିବାସୀଙ୍କ ପ୍ରକୃତି ଧର୍ମ ପ୍ରାକୃତିକ ଓ ମାନବୀୟ ମୂଲ୍ୟବୋଧ ଉପରେ ଆଧାରିତ।

ଦେ' ଦେବତା ମାନଙ୍କ ମଧ୍ୟରେ ଲନ୍ଦି, ପାଠ ଦେବ୍ତା, ଜାକର ଦେବ୍ତା, ମାଟିଆ କୁଙ୍ଗା, ଭୀମା ଦେବ୍ତା, ଅହିରା ମରା, ଫେଣି ଟେକା, ଘରର୍ ମାତା, ଘରର ପିତା, ନିଶାନି ମୁଣ୍ଡା, ସରଗ ଗୁରିଆ, ପାତାଲ ପୁରିଆ, ସୁରୁଜ ରାଜା, ସୁରୁଜ ରାନୀ, ବାର ରଜା, ବାର ରାନୀ, ବାର ଦେଓନୀ, ଛେନା କଟା, ମୁସରି କଟା, ବେନେଙ୍ଗ ରଜା, ବେନେଙ୍ଗ ରାନୀ ଇତ୍ୟାଦି ଅନ୍ୟତମ।

ପାକୁଲି ଗୁମ୍ଫା :-

ମାଳିପର୍ବତ ଉପରେ ପ୍ରାୟ କୋଡ଼ିଏଟି ଗୁମ୍ଫା ଅଛି। ସେ ଭିତରୁ ପାକୁଲି ଗୁମ୍ଫା ଅନ୍ୟତମ। ପାକୁଲି ଗୁମ୍ଫାର ବିଶାଳତା ଓ ସୁନ୍ଦରତା ବାକି ସବୁ ଗୁମ୍ଫାରୁ ଏହାକୁ ପୃଥକ କରେ। ସ୍ଥାନୀୟ ଆଦିବାସୀ ଜନଜାତି ବିଶ୍ୱାସ କରନ୍ତି ଯେ, ଏମାନେ ପୂଜା ଦେଉଥିବା ଦେ' ଦେବତା ଏ ଗୁମ୍ଫାରେ ରହନ୍ତି। ଚୈତ ପରବଠୁ ଆରମ୍ଭ କରି ନୂଆଁଖାଇ, ସମସ୍ତ ପରବରେ ଏହି ଗୁମ୍ଫାରେ ପୂଜା ଦିଆଯାଏ । ପୂଜା ହିସାବରେ ଛେଳି, ମଇଁଷି, ଗାଈ, କୁକୁଡା ଇତ୍ୟାଦି ବଳି ଦେ' ଦେବତାକୁ ସନ୍ତୁଷ୍ଟ କରିବା ପାଇଁ ଦେଇଥାନ୍ତି । ଚୈତ ପରବରେ ଯେତେବେଳେ ଗାଁର ଅବିବାହିତ ପୁରୁଷମାନେ ବେଣ୍ଟକୁ ଯାଆନ୍ତି, ଏ ଗୁମ୍ଫାରେ ଖରା ଓ ବର୍ଷାରୁ ବଞ୍ଚିବା ପାଇଁ ଆଶ୍ରୟ ନେଇଥାନ୍ତି । ଏଠି ବର୍ଷା ଦିନରେ ମାଳି ପର୍ବତରେ ବଞ୍ଚୁଥିବା ଜୀବଜନ୍ତୁ, ପକ୍ଷୀ, ସରୀସୃପ ମଧ୍ୟ ବର୍ଷାରୁ ବଞ୍ଚିବା ପାଇଁ ଆଶ୍ରୟ ନେଇଥାନ୍ତି ।

ଖାଦ୍ୟ ପାନୀୟ :-

ମାଳି ପର୍ବତରେ ବସବାସ କରୁଥିବା ଜନଜାତି ମୁଖ୍ୟତଃ କୃଷି ଉପରେ ନିର୍ଭର କରନ୍ତି । ବିଭିନ୍ନ ଜଙ୍ଗଲଜାତ ଦ୍ରବ୍ୟ ତଥା ଆମ୍ବ, କଦଳୀ, ପଣସ ସଂଗ୍ରହ କରନ୍ତି । ଦିନରେ ସେମାନେ ମାଣ୍ଡିଆ ପେଜ, ପଖାଳ, ସୁଆଁ ପଖାଳ, ମାଣ୍ଡିଆ ଜାଉ ଏମିତି ଅନେକ ପ୍ରକାର ଖାଦ୍ୟ ଖାଇଥାନ୍ତି । ଜଙ୍ଗଲରୁ ବାଉଁସ କରଡି ସଂଗ୍ରହ କରନ୍ତି । ଏମାନେ ଉଭୟ ଶାକାହାରୀ ଓ ମାଂସାହାରୀ ଭୋଜନ କରିଥାନ୍ତି । ଆମିଷରେ ଛେଳି, କୁକୁଡା, ପୋଢ଼, ଗାଇ, ମଇଁଷି ଓ ଜଙ୍ଗଲର ବିଭିନ୍ନ ପଶୁ ଶିକାର କରି ଖାଆନ୍ତି ।

ପାନୀୟରେ ବିଭିନ୍ନ ଶସ୍ୟ ଓ ଫଳରୁ ପାରମ୍ପରିକ ପଦ୍ଧତିରେ ଆମୋଦ ପ୍ରମୋଦ ପାଇଁ ବିଭିନ୍ନ ପ୍ରକାର ମଦ ତିଆରି କରିଥାନ୍ତି । ଯଥା-କୁଦୋ ମଦ, ଗୁଡ଼ ମଦ, ଚିନି ମଦ, ପଣସ ମଦ, ଆମ୍ବମଦ, ଅଙ୍ଗୁର ମଦ, ମହୁଲି କଦଳୀ ମଦ, ଲିଡ଼କି, ଚାଉଳ ମଦ, ଲାନ୍ଦା,

ତେନ୍ତୁଳି, ପେଣ୍ଡମ୍ (ହାଣ୍ଡିଆ) ଇତ୍ୟାଦି ପ୍ରସ୍ତୁତ କରନ୍ତି । ସକାଳ ଓ ସନ୍ଧ୍ୟା ସମୟରେ ସଲପ ରସ ଓ ଖଜୁରୀ ରସ ମୁଖ୍ୟ ପାନୀୟ ରୂପେ ବ୍ୟବହାର ହୁଏ ।

## ମାଳିପର୍ବତ ଆନ୍ଦୋଳନ :-

ଆଲୁମିନୀୟମ ଉତ୍ପାଦନକାରୀ କମ୍ପାନୀ ଆଦିତ୍ୟ ବିର୍ଲା ଗ୍ରୁପର ମାଲିକାନାରେ ଥିବା ହିଣ୍ଡାଲକୋ କମ୍ପାନୀକୁ ଓଡ଼ିଶା ସରକାରଙ୍କ ଦ୍ୱାରା ଖଣି ଲିଜ ପ୍ରଦାନ କରାଯାଇଥିଲା। ହିଣ୍ଡାଲକୋ କମ୍ପାନୀ ବାର୍ଷିକ ୬ ଲକ୍ଷ ଟନ୍ ବକସାଇଟ୍ ୨୦ ବର୍ଷ ପର୍ଯ୍ୟନ୍ତ ଖନନ କରିବା ପାଇଁ ସରକାରଙ୍କ ଠାରୁ ଅନୁମତି ହାସଲ କରିଥିଲା । ଏହି ଖଣି ଖନନ ଦ୍ୱାରା ଶିମିଲିଗୁଡା ବ୍ଲକର ଚାରୋଟି ପଞ୍ଚାୟତ ଯଥା-ଶୋରିଷ ପଦର, ଦଲେଇ ଗୁଡା, ଖୁଡି, ପାକଝୋଲା ଅଧିନରେ ଥିବା ପ୍ରାୟ ୪୪ଟି ଗ୍ରାମ ପ୍ରତ୍ୟକ୍ଷ ଭାବେ ପ୍ରଭାବିତ ହେବେ। ସ୍ଥାନୀୟ ଅଧିବାସୀମାନେ ମା ମାଟି, ଭାଷା ସଂସ୍କୃତି, ଜୀବନ ଜୀବିକା, ଐତିହ୍ୟ, ପରମ୍ପରା, ଦେ'ଦେବତା ଓ ନିଜର ପରିଚୟ ହରେଇବେ। ତେଣୁ, ଉକ୍ତ ବିପଦ ପ୍ରତି ସଚେତନ ସ୍ଥାନୀୟ ଅଧିବାସୀମାନେ ୨୦୦୩ ମସିହାରେ ଏକଜୁଟ ହୋଇ ଖଣିଖନନ ପ୍ରକ୍ରିୟାକୁ ତୀବ୍ର ବିରୋଧ କରିଥିଲେ ।

ମାର୍ଚ୍ଚ ୩୧,୨୦୦୩ ରେ ଖୁଡ଼ି ପଂଚାୟତର ମାଳିଗୁଡା ଗ୍ରାମରେ ପ୍ରଥମଥର ପାଇଁ ମାଳିପର୍ବତର ଚତୁଃପାର୍ଶ୍ୱରେ ଥିବା ଲୋକମାନଙ୍କୁ ନେଇ ଏକ ବୈଠକ ଅନୁଷ୍ଠିତ ହୋଇଥିଲା। ପ୍ରକାଶଥାଉ କି ନାଲକୋ/ହାଲରୁ ବିସ୍ଥାପିତ ହେଇଥିବା ଅର୍ଜୁନ ଖିଲ ତଥା ତାଙ୍କ ସାଥୀ ଡ଼ମ୍ବରୁଧର ଖିଲ ଉକ୍ତ ବୈଠକର ଆୟୋଜନ କରିଥିଲେ। ସ୍ଥାନୀୟ ଅଧିବାସୀମାନଙ୍କୁ ଖଣି ଖନନ ଜନିତ ବିସ୍ଥାପନ ଓ ଏହାର ପାର୍ଦୁଭାବ ଉପରେ ସଚେତନ କରେଇବା ଏହି ବୈଠକର ମୁଖ୍ୟ ଲକ୍ଷ୍ୟ ଥିଲା। ଏହି ବୈଠକରେ ଖଣିଖନନକୁ ବିରୋଧ କରିବାର ବିଭିନ୍ନ କାରଣ ଉପରେ ଆଲୋଚନା ହେଇଥିଲା। ହାଲ ଓ ଉପର କୋଲାବ ବିସ୍ଥାପିତ ହୋଇ ମାଳିଗୁଡ଼ାରେ ବାସ କରୁଥିବା ଲୋକମାନେ ନିଜେ ଅଙ୍ଗେ ନିଭେଇଥିବା ବିସ୍ଥାପନର କରୁଣ କାହାଣୀ ଉପସ୍ଥିତ ଲୋକମାନଙ୍କୁ ବୁଝାଇଥିଲେ । ସେମାନଙ୍କ ଅନୁସାରେ ବିସ୍ଥାପିତ ଲୋକମାନଙ୍କ କୌଣସି ଥଇଥାନ କରାଯାଏ ନାହିଁ। ଉପର କୋଲାବ ଡ୍ୟାମ ଅଞ୍ଚଳରେ ଯେତେବେଳେ ଜଳ ବିଦ୍ୟୁତ କାରଖାନା ହେଲା ସେଠାରେ କୌଣସି ଲୋକଙ୍କ ଥଇଥାନ କରାଗଲା ନାହିଁ। ସେମାନେ କେମିତି ନିଜର ଭିଟା ମାଟି, ଜଙ୍ଗଲ, ଜମି ହରାଇଲେ ଏ ସବୁର କରୁଣ କାହାଣୀ ବୈଠକରେ ଜଣେଇ ଥିଲେ ।

ଏସବୁ ଜିନିଷ ଆଲୋଚନା ପର୍ଯ୍ୟାଲୋଚନା ହେଲାପରେ ନିଷ୍ପତି ନିଆଗଲା ଯେ, ସେମାନେ ଭିଟା ମାଟି ଛାଡିବେ ନାହିଁ ଏବଂ ସେଠି ଖଣିଖନନ କରାଇ ଦେବେ ନାହିଁ। ସେମାନେ ଯେମିତି ମାଳିପର୍ବତ ଉପରେ ନିର୍ଭର କରି ବଂଚୁଛନ୍ତି ସେମିତି ହିଁ ବଂଚିବେ

ବୋଲି ସ୍ଥିର ହେଲା । ତା'ପରେ ଏହି ଜଳ, ଜଙ୍ଗଲ, ଜମି ଓ ମାଳିପର୍ବତକୁ ବଂଚାଇବା ପାଇଁ ପାହାଡ଼ର ଚତୁଃପାର୍ଶ୍ୱର ଲୋକମାନଙ୍କୁ ମିଶେଇ ଗୋଟିଏ ସଙ୍ଗଠନ ତିଆରି କରାଗଲା ଯାହାର ନାଁ ଦିଆଗଲା ମାଳିପର୍ବତ ସୁରକ୍ଷା ସମିତି ।

୨୦୦୩ ରୁ ମାଳି ପର୍ବତ ସୁରକ୍ଷା ସମିତି ବିଭିନ୍ନ ଉତ୍ଥାନ ପତନ ଦେଇ ଗତି କରି ମଧ୍ୟ ମାଳି ପର୍ବତର ସୁରକ୍ଷା ପାଇଁ ନିଷ୍ଠାପର ଭାବରେ କାର୍ଯ୍ୟ କରିଆସୁଛି।

## ମାଳିପର୍ବତ ସୁରକ୍ଷା ସମିତି ପ୍ରଥମ ପର୍ଯ୍ୟାୟ :-

୨୦୦୩ରେ ମାଳିପର୍ବତ ସୁରକ୍ଷା ସମିତି ଗଠନ ହେଲା ଏବଂ ଏହାର କାର୍ଯ୍ୟକର୍ତ୍ତା ଚୟନ କରାଗଲା। କାର୍ଯ୍ୟକର୍ତ୍ତାଙ୍କ ଚୟନ ପାଇଁ ପାହାଡ଼ର ଚତୁଃପାର୍ଶ୍ୱରେ ଥିବା ଲୋକଙ୍କୁ ଗୁରୁତ୍ୱ ଦିଆଗଲା।ମାଳି ପର୍ବତର ଦୁଇକାନି, ଗୋଟେ ପଟେ ପାକଝୋଲ ଆଉ ଗୋଟେପଟେ ମାଳିଗୁଡା । ପାକଝୋଲା ପଟରୁ ପ୍ରିତମ ପାଢ଼ୀଙ୍କୁ ସଭାପତି ଏବଂ ମାଳିଗୁଡା ପଟରୁ ଅର୍ଜୁନ ଖୀଲଙ୍କୁ ସେକ୍ରେଟାରୀ ବଛା ଗଲା।

ହାଲରୁ (HAL) ବିସ୍ଥାପିତ ହେଇଥିବା ମାଳିଗୁଡାର ଡ଼ମ୍ବରୁଧର ଖିଲଙ୍କୁ ଉପସଭାପତି ରଖାଗଲା । ସୋଦନ ନାଏକ ହେଲେ ଜଏଂଟ ସେକ୍ରେଟାରୀ । ଏମିତି କରି ସଂଗଠନ ପରିଚାଳନା କରିବା ପାଇଁ ସମସ୍ତଙ୍କୁ ଦାୟୀତ୍ୱ ଦିଆଗଲା । ସେହିଦିନ ଠାରୁ କମ୍ପାନୀର ବିଭିନ୍ନ କାର୍ଯ୍ୟକଳାପ ଉପରେ ତଥ୍ୟ ସଂଗ୍ରହ କରିବା କାମ ଆରମ୍ଭ ହେଲା ।

୨୦୦୩ ମାର୍ଚ୍ଚ ରୁ ୨୦୦୫ ପର୍ଯ୍ୟନ୍ତ କମ୍ପାନୀର ବିଭିନ୍ନ କାର୍ଯ୍ୟକଳାପ ଉପରେ ନଜର ରଖିବା ସହ ସ୍ଥାନୀୟ ଅଧିବାସୀଙ୍କ ମିଳିତ ଉଦ୍ୟମରେ କମ୍ପାନିକୁ ତିବ୍ର ବିରୋଧ ଏବଂ ଲଢ଼େଇ ଆରମ୍ଭ ହେଲା । ପରବର୍ତ୍ତି ସମୟରେ ୨୦୦୫ରେ କଙ୍କଡାଆମ ଗାଁରେ ଜନଶୁଣାଣିର ଆୟୋଜନ କରାଗଲା। ସରକାରଙ୍କ ତରଫରୁ ଜନଶୁଣାଣି ପାଇଁ ଯେତେବେଳେ ଘୋଷଣା କରାଗଲା, ସେତେବେଳେ ଜିଲ୍ଲାପାଳ ସୁବାଷ ଶର୍ମା ଏବଂ ସ୍ଥାନୀୟ ଲୋକପ୍ରତିନିଧି (ଏମ୍.ଏଲ.ଏ) ଜୟରାମ ପାଙ୍ଗୀ ଓ ଜିଲ୍ଲା ପରିଷଦ ଚେୟାରମେନ୍ ଚନ୍ଦ୍ରମା ସାଆନ୍ତା ଅଧିଷ୍ଠିତ ଥାଆନ୍ତି। । ତତ୍କାଳିନ ଜିଲ୍ଲାପାଳଙ୍କ ଅଧକ୍ଷତାରେ ହେଇଥିବା ଦ୍ୱାରା ଏହି ଜଣଶୁଣାଣିରେ ମାଳିପର୍ବତ ଲୋକମାନେ ଖଣି ଖନନକୁ ତୀବ୍ର ବିରୋଧ କଲେ। ଯାହାକୁ ଗଣମାଧ୍ୟମ ଅଣଦେଖା କଲା। କିନ୍ତୁ କମ୍ପାନୀ ସପକ୍ଷରେ ଥିବା କିଛି ଲୋକ କଙ୍କଡା ଆମ୍ବଗାଁ ଅରୁନ ପଟ୍ଟନାୟକଙ୍କ ସହିତ ମିଶି ଓ କିଛି ଯୁବକଙ୍କୁ ଆର୍ଥିକ ପ୍ରଲୋଭନ ଦେଖାଇ ନିଜ ପକ୍ଷକୁ ନେଇ ଯାଇଥିଲେ। ସେମାନଙ୍କ ସହାୟତାରେ ଯେତେବେଳେ ହିଣ୍ଡାଲକୋକୁ ବ୍ୟାନର ଦେଖାଇ ସ୍ୱାଗତ କରାଯାଇଥିଲା ସେତେବେଳେ ମୁଖ୍ୟ ସ୍ରୋତର ଗଣମାଧ୍ୟମ ଉକ୍ତ ଘଟଣାକୁ ଅତିରଞ୍ଜିତ କରି ସ୍ଥାନ ଦେଲା । ଯାହାକୁ ନେଇ ବିରୋଧକାରୀ ଏବଂ କମ୍ପାନୀ ସପକ୍ଷରେ ଥିବା ଲୋକଙ୍କ ସହିତ ବହୁତ ପାଟିତୁଣ୍ଡ

ହୋଇଥିଲା । ସ୍ଥାନୀୟ ଲୋକଙ୍କ ତୀବ୍ର ବିରୋଧ ଦେଖି ଜଣଶୁଣାଣି ହୋଇ ପାରିଲା ନାହିଁ ବୋଲି ଜିଲ୍ଲାପାଳ ସୁବାସ ଶର୍ମା ଘୋଷଣା କଲେ।  ଏବଂ ଜନଶୁଣାଣିକୁ ପରବର୍ତ୍ତି ସମୟ ପାଇଁ ସ୍ଥଗିତ ରଖାଗଲା ।

ଯେହେତୁ ଜନଶୁଣାଣି ହୋଇପାରିଲା ନାହିଁ କମ୍ପାନୀ କଙ୍କଡା ଆମ୍ବ ଗାଁର କିଛି କୁଜିନେତାଙ୍କୁ ଲାଳସା ଦେଖାଇ ସେମିଳିଗୁଡାର ଶ୍ରୀରାମ ଲଜରେ  ରେଜୁଲେସନରେ ହସ୍ତାକ୍ଷର କରାଯାଉଛି ବୋଲି ମାଳିପର୍ବତ ସୁରକ୍ଷା ସମିତି ସୂଚନା ପାଇଲା । କାଳ ବିଳମ୍ବ ନକରି ମାଳିପର୍ବତ ସୁରକ୍ଷା ସମିତିର ତତ୍କାଳୀନ ସଭାପତି ପ୍ରିତମ ପାଢ଼ି, ସେକ୍ରେଟାରୀ ଅର୍ଜୁନ ଖିଲ ଏବଂ ମାଲିଗୁଡ଼ା ଗାଁର ଯୁବକ ଆନନ୍ଦ ତିନିଜଣ ମିଶି ଜିଲ୍ଲାପାଳଙ୍କୁ ଏ ଜାଲିଆତି ବିଷୟରେ ଏକ ଖବର ଫେକ୍ସ ଜରିଆରେ ସୂଚନା ଦେଇଥିଲେ। ଫେକ୍ସରେ ଜାଲିଆତି ହସ୍ତାକ୍ଷରକୁ ନେଇ ତଦନ୍ତ କରିବାକୁ ଅନୁରୋଧ କରାଯାଇଥିଲା ।

ଏହି ଜନଶୁଣାଣି ଘଟଣା ପରେ ମାଳିପର୍ବତର ଲଢ଼େଇ ଦିନକୁ ଦିନ ବଢ଼ିବାକୁ ଲାଗିଲା । ସିମିଲିଗୁଡା ବ୍ଲକ ଏବଂ କୋରାପୁଟ ଜିଲ୍ଲାପାଳ ଅଫିସକୁ ଘେରାଉ କରି ଖଣିଖନନ ବିରୁଦ୍ଧରେ ଦାବିପତ୍ର ଦିଆଯାଇଥିଲା । ଉକ୍ତ ଦାବିପତ୍ରରେ ଲେଖାଯାଇଥିଲା ଯେ, ଲୋକମାନେ ନିଜର ଜୀବନ ଜୀବିକା ସହ ବେଶ ଖୁସିରେ ବଂଚୁଛନ୍ତି ଓ କୌଣସି ପ୍ରକାରର ଖଣି ଖନନ ନକରି ଲୋକଙ୍କୁ ମୁକ୍ତ ଭାବରେ ବଂଚିବା ପାଇଁ ଦିଆଯାଉ ।

ଏହା ସତ୍ୱେ ବି କମ୍ପାନୀ ନିଜ ଷଡଯନ୍ତ୍ରରୁ ନିବୃତ୍ତ ହେଲାନାହିଁ।  ନିଜ କାର୍ଯ୍ୟକଳାପକୁ ବନ୍ଦ କରି କମ୍ପାନୀ ସପକ୍ଷର ଲୋକ, ସରକାର ତଥା ଏନ ଜି ଓ ଇତ୍ୟାଦିଙ୍କ ସହାତୟାରେ ଖଣି ଖନନ ପାଇଁ ସର୍ଭେ କାର୍ଯ୍ୟ ଆରମ୍ଭ କଲା । କିନ୍ତୁ ସର୍ଭେକୁ ମଧ ସ୍ଥାନୀୟ ଲୋକମାନଙ୍କ ଦ୍ୱାରା ବିରୋଧ କରାଯାଇଥିଲା ।

୨୦୦୬ ବେଳକୁ କମ୍ପାନୀ ପାହାଡ଼ ଉପରକୁ ଯିବା ପାଇଁ ରାସ୍ତା ବନେଇବା ପାଇଁ  ରାସ୍ତା କାର୍ଯ୍ୟ ମଧ ଆରମ୍ଭ କଲା । ମାଳପର୍ବତ ସୁରକ୍ଷା ସମିତି ସଂଗଠନ ତରଫରୁ ଏହି କାର୍ଯ୍ୟକୁ  ଚାରିଆଡୁ  ବିରୋଧ ହେଲା ।  ଯାହା ଫଳରେ ପାହାଡ଼ ଉପରକୁ ଯେତିକି ରାସ୍ତା ଅଧାରେ ବନ୍ଦ ହୋଇଗଲା ।

୨୦୦୭ ମସିହା ଆରମ୍ଭରେ ଡି ଆର ଡ଼ି ଓ ଆରମ୍ଭରେ ହେଉଥିବା ଜିଲ୍ଲା ପରିଷଦ ବୈଠକୁ ଘେରାଉ ଓ ବିକ୍ଷୋଭ ମାଧମରେ କୋରାପୁଟ ଜିଲ୍ଲା  କଙ୍କଡା ଆମ୍ବରେ ହୋଇଥିବା ଜନଶୁଣାଣି (୨୦୦୬) ପର୍ଦାଫାଶ କରାଗଲା। ଯାହାଫଳରେ ଗ୍ରାମ ସଭାରେ ହେଇଥିବା ଜନଶୁଣାଣି ଗୃହିତ ହେଇନାହିଁ ନାହିଁ ବୋଲି ପୁଣିଥରେ ସେପ୍ଟେମ୍ବର ୨୦୦୭ ରେ ଘୋଷଣା କରାଗଲା ।

ଉକ୍ତ ଘଟଣାର ଏକ ମାସ ପରେ ଅକ୍ଟୋବର ୨୨ ତାରିଖରେ ଜିଲ୍ଲା ପରିଷର

ଏକ ଦଳ ମାଳିପର୍ବତ ଅଂଚଳକୁ ଯାଇ ତଦାରଖ କରିବେ ତଥା ଲୋକଙ୍କ ମତାମତ ନେବେ ଏବଂ ମାଳିପର୍ବତ ରେ ଖଣି ଖନନ ହେବକି ନାହିଁ ନିଷ୍ପତି ନେବେ ବୋଲି ଘୋଷଣା ହେଲା। ଏ ଘୋଷଣା ଏକ ମାସ ପରେ ଗୋଟିଏ ଦିନ ବହୁତ ଗୁଡିଏ ପୋଲିସ ଭ୍ୟାନ୍ ମାଳିଗୁଡ଼ା ଅଂଚଳକୁ ଆସିଥିଲା । ସ୍ଥାନୀୟ ଲୋକମାନେ ପୋଲିସକୁ ଏହାର କାରଣ ପଚାରିବାରୁ ସେମାନେ ଉତ୍ତରରେ କହିଲେ ଯେ, ଜିଲ୍ଲା ପରିଷଦ ଦଳ ଆସିବାର ଥିବାରୁ ତାଙ୍କ ସୁରକ୍ଷା ପାଇଁ ଏଠି ନିଯୋଜିତ କରାଯାଇଛି । ଲୋକମାନେ ମଧ୍ୟ ପୋଲିସମାନଙ୍କୁ ଆଶ୍ୱାସନା ଦେଇ ଥିଲେ ଯେ, ଜିଲ୍ଲା ପରିଷଦ ହେଉଛନ୍ତି ଆମର ଲୋକ ପ୍ରତିନିଧି ଓ ସେମାନେ ନିଜେ ପ୍ରତିନିଧିଙ୍କୁ ସୁରକ୍ଷା ଦେବା ପାଇଁ ପ୍ରସ୍ତୁତ ଅଛନ୍ତି । କିନ୍ତୁ ସ୍ଥାନୀୟ ଲୋକମାନେ ଜିଲ୍ଲା ପରିଷଦ ଦଳ ଆସିବାର ଅପେକ୍ଷା କରିଥିବା ବେଳେ ସେ ପଟେ କୋରାପୁଟର ଜିଲ୍ଲା ପରିଷଦ ଦଳର ବୈଠକ ଓ ମାଳିପର୍ବତ ଖଣି ଖନନର ଅନୁମୋଦନ କରାଉଥିବା କାର୍ଯ୍ୟର ସୁଚନା ସ୍ଥାନୀୟଲୋକ ତଥା ମାଳିପର୍ବତ ସୁରକ୍ଷା ସମିତିର ସେକ୍ରେଟାରୀକୁ ସୁଚନା ମିଳିଲା। ଲୋକମାନେ ମାଳିଗୁଡ଼ାରୁ କୋରାପୁଟ ପହଂଚିବା ଭିତରେ ସର୍ବସମ୍ମତି କ୍ରମେ ମାଳିପର୍ବତକୁ ଖଣି ଖନନ କରିବା ପାଇଁ ବୈଠକ ସମାପନ କରି ଅନୁମୋଦନ ହୋଇ ସାରିଥିଲା । ଏହି ସମୟରେ ସଭାପତି ପ୍ରିତମ ପାଢ଼ି ଏବଂ ଆଇନଜୀବୀ ଆନନ୍ଦ କୀର୍ଶାନିଙ୍କୁ ଲୋକ ମାନେ ବିଶ୍ୱାସ କରୁଥିଲେ। ଏଣୁ ସଂଗଠନର ଲୋକମାନେ ଏମାନଙ୍କ ଉପରେ ନିର୍ଭର କରୁଥିଲେ । ଏହି ଦିଜଣ ଲୋକଙ୍କୁ ବିଶ୍ୱାସଘାତ କରିଥିଲେ ଓ ଦ୍ୱିତୀୟ ଜିଲ୍ଲା ପରିଷଦ ବୈଠକ କଥା ଏମାନଙ୍କ ତରଫରୁ ସଂଗଠନର ବାକି କାର୍ଯ୍ୟକର୍ତ୍ତାଙ୍କୁ କୌଣସି ସୂଚନା ମିଳି ନଥିଲା । ଏ ସଂକ୍ରାନ୍ତିୟ କଥାବାର୍ତ୍ତା ହେବା ପାଇ ଫୋନ କରିବାରୁ ତାଙ୍କ ଫୋନ ମଧ୍ୟ ଅଫ୍ ଥିଲା ।

ଜିଲ୍ଲା ପରିଷଦର ଅନୁମୋଦନ ପରେ କମ୍ପାନୀ ତେନ୍ତୁଳିଗୁଡ଼ା ଏବଂ କଙ୍କଡା ଆମ୍ବ ଗ୍ରାମର ଜମି ଯାଉଥିବା ଲୋକମାନଙ୍କୁ ପଇସା ଦେଇ ରାସ୍ତା ତିଆରି କାର୍ଯ୍ୟ ଜୋର୍ ସୋରରେ ଆରାମ କଲା । ଯାହା ଫଳରେ କମ୍ପାନୀକୁ ବିରୋଧ କରୁଥିବା ଲୋକମାନେ ଆନ୍ଦୋଳନ ମାଧ୍ୟମରେ ତୀବ୍ର ବିରୋଧ କରିଥିଲେ । କିନ୍ତୁ ଏହି ପ୍ରତିବାଦରେ ପ୍ରିତମ ପାଢ଼ୀ ଏବଂ ଆନନ୍ଦ କିର୍ସାନିଙ୍କ କୌଣସି ସହଯୋଗ ନଥିଲା । ଏହି ରାସ୍ତା ତିଆରିକୁ ବନ୍ଦ କରିବା ପାଇଁ ଲୋକମାନେ ରାଲି, ଧାରଣା, ଏବଂ ବ୍ଲକ ଘେରାଓ ର ଆଶ୍ରୟ ନେଇଥିଲେ । ବ୍ଲକ୍ ଘେରାଓ ପରେ ତତ୍କାଳୀନ ବି.ଡି.ଓ. ଆଶ୍ୱାସନା ଦେଇଥିଲେ ଯେ ରାସ୍ତା କେବଳ ଗାଁ ଆଡ଼କୁ ଯାଉଛି ଏଣୁ ଲୋକମାନେ ବ୍ୟସ୍ତ ହେବାର ନାହିଁ । କିନ୍ତୁ ଯେତେବେଳେ ରାସ୍ତା ତିଆରି ପାଇଁ ପାହାଡ଼ କାଟିବା ଆରମ୍ଭ ହେଲା ସ୍ଥାନୀୟ ଲୋକମାନଙ୍କ ଭିତରେ ପୁଣି ଅସନ୍ତୋଷ ଦେଖା ଦେଇଥିଲା । ଲୋକମାନେ ପୁଣି ଥରେ ମିଳିତ ହୋଇ ପୁଣି ତୀବ୍ର

ବିରୋଧ କରିଥିଲେ । ସେହି ସମୟରେ ପ୍ରଫୁଲ୍ଲ ସାମନ୍ତରା ହାଇକୋର୍ଟରେ ଏକ ଜନସ୍ୱାର୍ଥ ମାମଲା ରୁଜୁ କରିଥିଲେ । ସେଇଠି ଜଣା ପଡିଥିଲା ଯେ, ପ୍ରିତମ ପାଢ଼ୀ ଓ ଆନନ୍ଦ କିର୍ସାନି ଲିଖିତ ଆକାରରେ ଗଭର୍ଣ୍ଣଙ୍କୁ ଜଣେଇଥିଲେ ଯେ, 'ଆମେ ଏଠି ଭୁଲରେ ଆନ୍ଦୋଳନ କରୁଛୁ । ମାଳିପର୍ବତ ଖଣି ଖନନ ହେଲେ ସ୍ଥାନୀୟ ଲୋକଙ୍କ କୌଣସି କ୍ଷତି ହେବନାହିଁ, ବରଂ ମାଳିପର୍ବତ ଚତୁଃପାଶ୍ୱର୍ରେ ରହୁଥିବା ଲୋକମାନଙ୍କର ବହୁତ ଉପକାର ହବ ।'

ଏ ଜନସ୍ୱାର୍ଥ ମାମଲା ଚିଠି ପ୍ରଫୁଲ୍ଲ ସାମନ୍ତରା ବିଦ୍ୟୁତ ମହାନ୍ତିଙ୍କ ହାତରେ ମାଳିପର୍ବତ ସୁରକ୍ଷା ସମିତିକୁ ପଠାଇଥିଲେ । ଜନସ୍ୱାର୍ଥ ମାମଲା ଚିଠି ପଢ଼ିଲା ପରେ ପ୍ରିତମ ପାଢ଼ୀ ଓ ଆନନ୍ଦ କିର୍ସାନିକୁ ଡକା ଯାଇଥିଲା ଆଉ ଜନସ୍ୱାର୍ଥ ମାମଲା ସଂପର୍କିତ ପଚରା ଉଚରା କରାଯାଇଥିଲା । କିନ୍ତୁ ସେମାନେ ଏ ସଂପର୍କରେ କମ୍ପାନୀ ଆମ ନାରେ ମିଛ ଜାଲ ହସ୍ତାକ୍ଷର କରିଥାଇପାରେ ବୋଲି ଜିଦ୍ ଧରିଲେ । ଯାହା ଫଳରେ ଉକ୍ତ ବୈଠକରେ ଭିଷଣ ଗଣ୍ଡଗୋଲ ହୋଇଥିଲା । ମାଳିପର୍ବତ ସୁରକ୍ଷା ସମିତି ସଂଗଠନ ତରଫରୁ ଉଭୟ ପ୍ରିତମ ପାଢ଼ୀ ଓ ଆନନ୍ଦ କିର୍ସାନିକୁ ମିଡ଼ିଆକୁ ଏସବୁ କମ୍ପାନୀ ଆମକୁ ଜୋର୍ ଜବରଦସ୍ତି ଫସଉଛି ବୋଲି କହିବା ପାଇଁ କୁହାଗଲା । ହେଲେ ସେମାନେ ସେଇ ବିବୃତ୍ତି ଦେଲେ ନାହିଁ ଏବଂ ପରବର୍ତ୍ତି ସମୟରେ ଏମାନେ କମ୍ପାନୀକୁ ଖୁଲମ୍‌ଖୁଲା ଭାବେ ସମର୍ଥନ କଲେ । ଯାହା ଫଳରେ ଖଣି ଖନନ କାର୍ଯ୍ୟ ପୁଣିଥରେ ଆରମ୍ଭ ହେଲା ।

ପ୍ରିତମ ପାଢ଼ୀ ଓ ଆନନ୍ଦ କିର୍ସାନିକୁ ଛାଡ଼ି ମାଳି ପର୍ବତର ସୁରକ୍ଷା ସମିତିର କାର୍ଯ୍ୟକାର୍ତ୍ତା ଓ ସ୍ଥାନୀୟ ଲୋକମାନେ ପାହାଡ଼ ଉପରକୁ ଯାଇ ଖଣି ଖନନକାର୍ଯ୍ୟକୁ ବିରୋଧ କରିଥିଲେ। ପାହାଡ଼ ଉପରେ ଯେତିକି ବୁଲଡୁଜର, ଜେସିବି, ଡ଼ମ୍ପର ଥିଲା ସବୁକୁ ତଳକୁ ଓହ୍ଲାଇବା ପର୍ଯ୍ୟନ୍ତ ଆନ୍ଦୋଳନ ହୋଇଥିଲା। ସେତେବେଳକୁ କମ୍ପାନୀ ପାହାଡ଼ର କିଛି ଅଂଶ ଖନନକରି ଅନ୍ୟ ଜାଗାକୁ ମାଟି ପଠାଇ ସାରିଥିଲା ସେ ଭିତରେ ପ୍ରାୟ ଦୁଇ ଟ୍ରେନ ବକ୍ସାଇଟ୍ ମାଟି ଚାଲାଣ ହୋଇ ସାରିଥିଲା ।

ଏହି ଘଟଣାରର ଦୁଇ ଦିନପରେ କମ୍ପାନୀ ସପକ୍ଷବାଦୀ ଲୋକ କଙ୍କଡ଼ା ଆମ୍ବ ତେନ୍ତୁଳି ଗୁଡ଼ା ଏବଂ କମ୍ପାନୀର କିଛି ଭଡ଼ାଟିଆ ଗୁଣ୍ଡା ମାଳିପର୍ବତ ସୁରକ୍ଷା ସମିତିର ନେତୃସ୍ଥାନୀୟ ଲୋକ ଏବଂ ପାଳିଖୁଡ଼ା ଗାଁର ଯାଇ ସମସ୍ତଙ୍କୁ ମାରାଣାନ୍ତକ ଆକ୍ରମଣ କରିଥିଲେ । ମାଳି ପର୍ବତର ସୁରକ୍ଷା ସମିତିର ସେକ୍ରେଟାରୀ ଅର୍ଜୁନ ଖିଲ କହନ୍ତି, 'ଗାଁର ପ୍ରତ୍ୟେକ ଘରକୁ ପଶି ମହିଳା, ବୃଦ୍ଧ, ଶିଶୁ ସମସ୍ତଙ୍କୁ ଆକ୍ରମର୍ଣ କରିଥିଲେ । ଏବଂ ଏପରି ଏକ ଅମାନବୀୟ କାଣ୍ଡ ଘଟେଇବାରେ ହିଣ୍ଡାଲକୋ କମ୍ପାନୀ ଏବଂ ହନୁମାନ ଟ୍ରାନ୍ସପୋର୍ଟ କମ୍ପାନୀ ଦାୟୀ ଅଟନ୍ତି । ଏ ଘଟଣାରେ ତିନିଜଣଙ୍କର ମୃତ୍ୟୁ ମଧ ଘଟିଥିଲା । ଏ ସଂପର୍କରେ ଅର୍ଜୁନ ଖିଲ ସୂଚନା ପାଇ ପୋଲିସ ଥାନାରେ ସୂଚନା ଦେଇ ପୋଲିସ ସହ ଗାଁକୁ

ଫେରୁଥିବା ବେଳେ କଙ୍କଡ଼ା ଆମ୍ବ ଗାଁରେ ପୋଲିସ ଭ୍ୟାନକୁ ଅଟକା ତାଙ୍କ ଉପରେ ଆକ୍ରମଣ ହୋଇଥିଲା । ଏ ଘଟଣାରେ ଆଘାତ ହୋଇଥିବା ଲୋକମାନଙ୍କୁ କୁନ୍ଦୁଲି ଡାକ୍ତରଖାନାରେ ଭର୍ତ୍ତି କରାଯାଇ ପରବର୍ତ୍ତି ସମୟରେ କୋରାପୁଟ ଡାକ୍ତରଖାନାକୁ ସ୍ଥାନାନ୍ତରିତ କରାଯାଇଥିଲା ।

ଏଇ ଘଟଣାରୁ ପ୍ରାୟ ୩ ମାସ ପର୍ଯ୍ୟନ୍ତ ମାଳିଗୁଡ଼ା ଗ୍ରାମର ଲୋକମାନଙ୍କୁ ତେନ୍ତୁଳି ଗୁଡ଼ା ଓ କଙ୍କଡ଼ା ଆମ୍ବ ଗାଁର ଲୋକମାନେ ରାସ୍ତାରେ ଆସିବାକୁ ଦେଲେ ନାହିଁ । ଯାହାଫଳରେ ଲୋକମାନଙ୍କ ଜୀବନ ଯାପନ ହନ୍ତସନ୍ତ ହୋଇଯାଇଥିଲା । ଏପରି ମୁହୂର୍ତ୍ତରେ ମାଳି ପର୍ବତ ଚତୁଃପାଶ୍ୱର୍ରେ ରହିଥିବା ଲୋକମାନେ ମାଳିଗୁଡା ଗ୍ରାମକୁ ସମର୍ଥନ ଓ ସାହାର୍ଯ୍ୟ କରୁଥିଲେ ।

ପରବର୍ତ୍ତି ସମୟରେ ରାଜନାଗୁଡାରେ ମାଳିପର୍ବତ ସୁରକ୍ଷା ସମିତିର ଏକ ବୈଠକ ବସିଲା। ଉକ୍ତ ବୈଠକରେ ଉକ୍ତ ଘଟଣା ଉପରେ ଆମୂଳଚୂଳ ଆଲୋଚନା (ଯଥା- ଘଟଣା କାହିଁକି ଘଟିଲା, ତା ପାଇଁ ଦାୟୀ କିଏ) ହେଲା। ବାକି ଗାଁମାନଙ୍କ ତରଫରୁ ଉକ୍ତ ଘଟଣାର ନିନ୍ଦା କରାଗଲା ଏବଂ ଏକ ଭାଇଚାରା ସୃଷ୍ଟି କରି 'ଜଳ, ଜଙ୍ଗଲ ଜମିନ ଆମର' ବୋଲି ପୁଣି ଥରେ ଲଢ଼େଇକୁ ଆଗକୁ ନେବା ପାଇଁ ଦୃଢ଼ ନିଷ୍ପତି ନିଆଗଲା । ଏ ଘଟଣା ପରେ ମାଳି ପର୍ବତ ସୁରକ୍ଷା ସମିତି ଆନ୍ଦୋଳନ ତୀବ୍ର ହେବାରେ ଲାଗିଲା ।

ଦ୍ୱିତୀୟ ପର୍ଯ୍ୟାରେ ମାଳିପର୍ବତ ଆନ୍ଦୋଳନ :-

୨୦୦୮ ରେ ମାଳି ପର୍ବତ ସୁରକ୍ଷା ସମିତିର କାର୍ଯ୍ୟକର୍ତ୍ତାମାନଙ୍କୁ ବିଭିନ୍ନ କାରଣରୁ ବଦଳା ଗଲା । ଆନ୍ଦୋଳନ ପ୍ରତି ପ୍ରିତମ ପାଢ଼ୀ ଓ ଆନନ୍ଦ କିର୍ସାନି ବିଶ୍ୱାସ ଘାତକତା କଲେ । ତା'ପରେ ସଂଗଠନର ସଭାପତି, ସେକ୍ରେଟାରୀ ଇତ୍ୟାଦିଙ୍କୁ ନୂତନ ଭାବେ ଚୟନ କରାଯାଇଥିଲା । ଇତି ମଧ୍ୟରେ ୨୦୦୮ରେ ମାଳିପର୍ବତର ସେକ୍ରେଟାରୀ ଅର୍ଜୁନଖୀଲଙ୍କୁ ସରକାରୀ ଚାକିରୀ ଶିକ୍ଷକ ପଦ ମିଳିବାର ସେ ସ୍ୱେଛାକୃତ ଭାବରେ ସେକ୍ରେଟାରୀ ପଦରୁ ଇସ୍ତଫା ଦେଇଥିଲେ। ତାଙ୍କ ସ୍ଥାନରେ ସଦାନନ୍ଦ ପୁଜାରୀଙ୍କୁ ସେକ୍ରେଟାରୀ ଭାବରେ ମନୋନିତ କରାଗଲା ଓ ହୁନ୍ଦୁସ୍ତାନ ଏରୋନେଟିକ ଲିମିଟେଡ ପ୍ରକଳ୍ପରୁ ବିସ୍ଥାପିତ ଡମ୍ବରୁଧର ଖୀଲଙ୍କୁ ସଭାପତି ରୂପେ ଚୟନ କରାଯାଇଥିଲା । ଅର୍ଜୁନ ଖିଲଙ୍କୁ ସରକାରୀ ଚାକିରି ମିଳିବା ସତ୍ତ୍ୱେ ବି ସେ ଆନ୍ଦୋଳନରେ ଓହରି ଯାଇନଥିଲେ । ଅର୍ଜୁନ ଖିଲ କହନ୍ତି- "ମୋ ପରିବାର ପେଟ ପାଇଁ ମୁଁ ସରକାରୀ ଚାକିରି ଯୋଗ ହେଇଥିଲି କିନ୍ତୁ ଯାହା ହେଲେବି, ମୁଁ ଏ ମାଟିରେ ଜନ୍ମ ଏ ଜଙ୍ଗଲ ପାହାଡ଼ ଝରଣାଙ୍କ ସହିତ ମୋର ଜନ୍ମରୁ ସଂପର୍କ । ମାଳିପର୍ବତକୁ ବଂଚାଇବା ମୋର ପ୍ରଥମ କର୍ତ୍ତବ୍ୟ । ମାଳି ପର୍ବତ ବିନା

ଆମର ଅସ୍ତିତ୍ୱ କିଛି ନାହିଁ । ପ୍ରତ୍ୟେକ୍ଷ ଭାବରେ ନହେଲେ ବି ପରୋକ୍ଷ ଭାବରେ ମୋ ଜଳ, ଜଙ୍ଗଲ, ଜମି ଓ ମୋ ପାହାଡ଼ ପାଇଁ ମୋ ଜୀବନ ଥିବା ପର୍ଯ୍ୟନ୍ତ ସଂଘର୍ଷ କରିବି ।"

ନୂତନ କାର୍ଯ୍ୟକର୍ତ୍ତାଙ୍କ ଚୟନ ପରେ ଆଗଭଳି ଆନ୍ଦୋଳନ ପୁଣି ଥରେ ତେଜି ଉଠିଲା । ମାଳିପର୍ବତ ଚତୁଃପାଶ୍ୱର୍ରେ ଥିବା ଗାଁ ଲୋକଙ୍କର ସଂଗଠନ ପ୍ରତି ପୁଣିଥରେ ସମର୍ଥନ ଆସିଲା । ୨୦୦୯ରେ କମ୍ପାନୀ ପୁଣିଥରେ କାର୍ଯ୍ୟ ଆରମ୍ଭ କଲା । ପାହାଡ଼ର ମାଟି ନେଇ ଡଳିଆମ୍ବ ନିକଟରେ ରଖିଲା । ଏଥର ଡଳିଆମ୍ବଠାରୁ ମାଟି ପରିବହନ କରିବା ପାଇଁ ହନୁମାନ ଟ୍ରାନ୍ସପୋର୍ଟ ପରିବର୍ତ୍ତେ ବଡ଼ବିଲର ଆଉ ଏକ କମ୍ପାନୀକୁ ଲିଜ୍ ମିଳିଥିଲା । ନୂଆ କମ୍ପାନୀ ଯେତେବେଳେ ମାଟି ପରିବହନ କାର୍ଯ୍ୟ ଆରମ୍ଭ କଲା ସଂଗଠନ ସହ ସ୍ଥାନୀୟ ଲୋକମାନେ ପୁଣିଥରେ ତୀବ୍ର ବିରୋଧ କରିବାକୁ ଲାଗିଲେ । ଫଳରେ କମ୍ପାନୀର ଦଲାଲ, ଗୁଣ୍ଡା ଏବଂ ଆନ୍ଦୋଳନକାରୀଙ୍କ ମଧ୍ୟରେ ଭିଷଣ ଭାବରେ ଗୋଷ୍ଠି ସଂଘର୍ଷ ଲାଗି ରହିଲା । ବାରମ୍ବାର ଲୋକଙ୍କ ଆନ୍ଦୋଳନାତ୍ମକ ବିରୋଧ ଫଳରେ ନୂଆଁ କମ୍ପାନୀ ମାଟି ପରିବହନ କାର୍ଯ୍ୟ କରିବାରେ ସଫଳ ହେଲା ନାହିଁ । ପରିବହନ କାର୍ଯ୍ୟ ବନ୍ଦ କରି ପଳାୟନ କଲା । କିଛି ଦିନ ପରେ ପୂର୍ବରୁ କାର୍ଯ୍ୟରତ ଥିବା ହନୁମାନ ଟ୍ରାନ୍ସପୋର୍ଟ ହିଣ୍ଡାଲକୋ ତରଫରୁ ପୁଣିଥରେ କାର୍ଯ୍ୟ କରିବା ଆରମ୍ଭ କଲା ।

୨୦୦୯ ର ଶେଷ ବେଳକୁ ନିଜ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ କମ୍ପାନୀ ପୁଣିଥରେ ବିଭିନ୍ନ ଷଡ଼ଯନ୍ତ୍ର ରଚିବାରେ ଲାଗିଲା । ଏଥର ନୂତନ ଭାବେ ଚୟନ ହୋଇଥିବା ଡମ୍ବରୁଧର ଖିଲକୁ କିଣିନେବାର ଚେଷ୍ଟା କଲା ଏବଂ ପ୍ରଚାର ମଧ୍ୟ କଲା । ଯାହାଦ୍ୱାରା ସ୍ଥାନୀୟ ଲୋକଙ୍କ ମନରେ ମାଳି ପର୍ବତ ସୁରକ୍ଷା ସମିତିକୁ ନେଇଁ ଆଉଥରେ ବିତୃଷ୍ଣା ସୃଷ୍ଟି ହେଲା । କମ୍ପାନୀର ଏହି ଗୁଜବକୁ ଭୁଲ ପ୍ରମାଣିତ କରିବା ପାଇଁ ସଭାପତି ଡମ୍ବରୁଧର ଖିଲ ସର୍ବ ସମ୍ମୁଖରେ ନିଜକୁ ନିର୍ଦ୍ଦୋଷ ବୋଲି ଦାବି କଲେ । ଏ ମିଥ୍ୟା ପ୍ରଚାରକୁ ଭୁଲ ପ୍ରମାଣ କରିବା ସହ ନିଜର ପଦବୀରୁ ସ୍ୱେଚ୍ଛାକୃତ ଭାବରେ ଇସ୍ତଫା ଦେଲେ । ଏବଂ ଜୀବନ ତମାମ ମାଳିପର୍ବତ ଆନ୍ଦୋଳନକୁ ସମର୍ଥନ କରିବେ ବୋଲି ପ୍ରତିଶ୍ରୁତି ଦେଲେ। । ଫଳରେ ନୂତନ ସେକ୍ରେଟାରୀ ଭାବେ ଆଉ ଥରେ ଦଶରଥ ଖିଲଙ୍କୁ ଚୟନ କରାଗଲା ଓ ସଦାନନ୍ଦ ଗୁଜାରୀ ଜାଗାରେ ପୂର୍ଣ୍ଣଜାନିକୁ ସଭାପତି ରଖାଗଲା ।

ଏମିତି ଉତ୍ଥାନ ପତନ ଦେଇ ମାଳିପର୍ବତ ସୁରକ୍ଷା ସମିତି ଚାଲିଥିବା ବେଳେ ଆନ୍ଦୋଳନ ମଧ୍ୟ କିଛିମାତ୍ରାରେ ପ୍ରଭାବିତ ହେଇଥିଲା । ସେହି ସମୟରେ ସଂଗଠନରେ ଆଉ ଜଣେ ସକ୍ରିୟ ସଦସ୍ୟ ଥାନ୍ତି ଗୁପ୍ତ ଖରା ଯାହାକୁ ସଂଗଠନର କେସିଅର୍ ଭାବେ ଚୟନ କରାଯାଇଥିଲା । କିନ୍ତୁ ଏପରି ଘଡି ସନ୍ଧି ମୁହୂର୍ତ୍ତରେ କମ୍ପାନୀ ବିଭିନ୍ନ ପ୍ରଲୋଭନର ଲାଳସା ଦେଖାଇ ଗୁପ୍ତ ଖୁରାଙ୍କୁ କିଣି ନେବାରେ ସକ୍ଷମ ହୋଇଥିଲା। ଯାହାଫଳରେ

ସଂଗଠନରୁ ଗୁପ୍ତଖୁରାଙ୍କୁ ମଧ୍ୟ ବିତାଡିତ କରାଯାଇ ଥିଲା ।

ଜାନୁୟାରୀ ୨୦୧୦ ରେ ଆନ୍ଦୋଳନକୁ କୌଣସି ପ୍ରକାର ଭ୍ରୂକ୍ଷେପ ନକରି ହନୁମାନ ଟ୍ରାନ୍ସପୋର୍ଟ ମାଟି ପରିବହନ କାର୍ଯ୍ୟ ଚାଲୁ ରଖିଲା । ଏହି ସମୟରେ ଆନ୍ଦୋଳନ ଆହୁରି ଉଗ୍ର ରୂପ ଧାରଣ କରିଥିଲା। ପରିବହନ କାର୍ଯ୍ୟକୁ ବନ୍ଦ କରିବା ପାଇଁ ୧୦ ହଜାରର ଉର୍ଦ୍ଧ୍ୱ ଆନ୍ଦୋଳନକାରୀ ଜାନୁୟାରୀ ମାସର ଶୀତକୁ ଭ୍ରୂକ୍ଷେପ ନକରି ଦୀର୍ଘ ତିନିଦିନ ପର୍ଯ୍ୟନ୍ତ ଧାରଣାରେ ବସିଥିଲେ । ଧାରଣାକୁ ବିଫଳ କରିବା ପାଇଁ କମ୍ପାନୀ ଜୟପୁର ଓ କୋରାପୁଟ ତଥା ବିଭିନ୍ନ ଆଡୁ ଦିଇ ଶହରୁ ଅଧିକ ଭଡ଼ାଟିଆ ଗୁଣ୍ଡା ଆଣି ପୂର୍ବ ଭଳି ପୁଣିଥରେ ଗଣ୍ଡଗୋଳ ସୃଷ୍ଟି କରିବା ପରିସ୍ଥିତି ସୃଷ୍ଟି କରିଥିଲା। ଯେତେବେଳେ ଆନ୍ଦୋଳନକାରୀ ମାନେ କୌଣସି ପ୍ରକାରେ ବି ଆନ୍ଦୋଳନରୁ ନିବୃତ୍ତ ହେଲେ ନାହିଁ, ଉକ୍ତ ସ୍ଥାନର ଲୋକେ ଉତ୍ତ୍ୟେକ୍ତ ହୋଇ ଉତ୍ତେଜନା ପରିସ୍ଥିତି ସୃଷ୍ଟି ହେଲା ।

ମାଳି ପର୍ବତ ସୁରକ୍ଷା ସମିତି ଏବଂ ଭଡାଟିଆ ଗୁଣ୍ଡାମାନଙ୍କ ମଧ୍ୟରେ ଏପରି ହିଂସାତ୍ମକ ପରିସ୍ଥିତି ସୃଷ୍ଟି ହେବାରୁ ପରିଶେଷରେ କମ୍ପାନୀ ଗୁଣ୍ଡାମାନେ ଉକ୍ତ ସ୍ଥାନ ଛାଡି ପଳାଇବା ପାଇଁ ବାଧ୍ୟ ହେଲେ । ଆନ୍ଦୋଳନ ଏତେ ତୀବ୍ର ଥିଲା ଯେ, ମାଟି ପରିବହନ ପାଇଁ ଥିବା ଟ୍ରକ, ଟ୍ରାକ୍ଟର, ବୁଲଡୋଜର, ମେସିନ୍ ଇତ୍ୟାଦିକୁ ଆନ୍ଦୋଳକାରୀମାନେ ଭାଙ୍ଗି ଦେଇଥିଲେ ।

ପରବର୍ତ୍ତି ସମୟରେ କମ୍ପାନୀର ସବୁ ଯୋଜନା ଅସଫଳ ହେଇଯିବାରୁ କମ୍ପାନୀ ପାଖରେ କୌଣସି ଉପାୟ ରହିଲା ନାହିଁ । ଯେହେତୁ କମ୍ପାନୀ କଳେବଳେ କୌଶଳେ ଖଣିଖନନ କରିବାକୁ ଚାହୁଁଥିଲା, ଏଥର କୌଣସି ଉପାୟ ନପାଇ ଆନ୍ଦୋଳନରେ ଲିପ୍ତଥିବା ନେତୃସ୍ଥାନୀୟ ଲୋକଙ୍କ ନାମ'ରେ ବିଭିନ୍ନ ମିଥ୍ୟା ମକଦ୍ଦମାର ଆଶ୍ରୟ ନେଇ ଆନ୍ଦୋଳନକୁ ଦୁର୍ବଳ କରିବାକୁ ଚେଷ୍ଟା କଲା। ଏହି ସମୟରେ ମାଳି ପର୍ବତର ଚତୁଃପାର୍ଶ୍ୱରେ ୧୪୪ ଧାରା ଲାଗୁ କରାଗଲା । ଇତି ମଧ୍ୟରେ ପ୍ରାୟ ୪୦୦ ଜଣ ଆନ୍ଦୋଳନକାରୀଙ୍କ ନାମରେ ମଧ୍ୟ ମିଥ୍ୟା ଆରୋପ କରାଗଲା ଏବଂ ତାଙ୍କ ଗିରଫ୍ ପାଇଁ ପୋଲିସ ବିଜୁଳି ବେଗରେ କାର୍ଯ୍ୟ ଆରମ୍ଭ କଲା । ଯେହେତୁ ସେହି ଅଂଚଳରେ ୧୪୪ ଧାରା ଲାଗୁ ହୋଇଥିଲା, ସ୍ଥାନୀୟ ଲୋକଙ୍କୁ ଗୃହବନ୍ଦୀ କରି ମଧ୍ୟ ରଖାଯାଇଥିଲା। ଉକ୍ତ ଗଣ୍ଡଗୋଳରେ ପୂର୍ବତନ ସଭାପତି ଅର୍ଜୁନ ଖିଲଙ୍କର ସଂପୃକ୍ତି ନଥାଇ ମଧ୍ୟ ତାଙ୍କ ନାମରେ ମିଥ୍ୟା ଆରୋପ ରୁଜୁ କରାଯାଇଥିଲା। ଏହି ଅଂଚଳର ଲୋକମାନଙ୍କ ଉପରେ ବାରମ୍ବାର ମାନସିକ ଚାପ ସୃଷ୍ଟି କରିବା ପାଇଁ ପ୍ରତ୍ୟେକ ଗାଁରେ ପୋଲିସ ମୁତୟନ କରାଗଲା ଏବଂ ବିନା କାରଣରେ ଗାଁର ଯୁବକମାନଙ୍କୁ ପୋଲିସ ହଇରାଣ କରି ଚାଲିଥିଲା । ସରକାରଙ୍କ ଆଦେଶ କ୍ରମେ ପୋଲିସ ୪୦୦ ଲୋକଙ୍କ ଗିରଫ ପାଇଁ ପୋଲିସ ପ୍ରସ୍ତୁତ ହେଲା।ଏହା

ବିରୋଧରେ ସ୍ଥାନୀୟ ଲୋକମାନଙ୍କ ଲଢ଼େଇ ପୁନଃର୍ବାର ଜାଗୃତ ହେଲା। ଆନ୍ଦୋଳନରେ ଲୋକମାନେ ଜିଦ କରି କହିଲେ ଯେ, ଯେଉଁ ୪୦୦ ଲୋକଙ୍କୁ ପୋଲିସ ଗିରଫ କରିବା ପାଇଁ ଚାହୁଁଛି କେବଳ ତାଙ୍କୁ ଗିରଫ୍ ନକରି ତାଙ୍କ ପରିବାର ଯଥା-ମହିଳା, ପୁରୁଷ, ଶିଶୁ, ଗାଈ, ଗୋରୁ, ଛେଳି, କୁକୁଡ଼ା ସମସ୍ତଙ୍କୁ ଗିରଫ୍ କରୁ। ଯେଉଁଦିନ ସେମାନେ ଜେଲରୁ ଖଲାସ ହେବେ ପ୍ରତ୍ୟେକ ଜିନିଷର ଟିକିନିଖି ହିସାବ କିତାବ ପୋଲିସ ଦେବବୋଲି ଲୋକେ ଦାବି କରିଥିଲେ । ଏପରି ଏକ ସର୍ତ୍ତ ଆଗରେ ପୋଲିସ ହାରମାନିଥିଲା ଆଉ କାହାକୁ ଗିରଫ କରିନଥିଲା । ମାସକ ଭିତରେ ୧୪୪ ଧାରାକୁ ଉଠାଇ ଦିଆଯାଇଥିଲା । ସେଇ ଦିନଠୁ ଆଜି ପର୍ଯ୍ୟନ୍ତ (୨୦୨୦) କମ୍ପାନୀର କୌଣସି କାର୍ଯ୍ୟ ଅଗ୍ରସର ହୋଇ ନାହିଁ। କିନ୍ତୁ ମଳି ପବର୍ତ ସୁରକ୍ଷା ସମିତିର ସଭାପତି ଓ ସେକ୍ରେଟାରୀ ଦଶରଥ ଖିଲ ଓ ପୂର୍ଣ୍ଣଜାନି ଉଭୟଙ୍କୁ ହିଣ୍ଡାଲ୍କୋ କମ୍ପାନୀ ବିଜୟ ନଗରକୁ ଡାକି ମୁଲଚାଲ କରିବାର ସୂଚନା ଲୋକମାନଙ୍କୁ ମିଳିଛି। ଯାହା ଫଳରେ ୨୦୨୦ରେ ପାକଖୋଲା ଗ୍ରାମରେ ସଂଗଠନ ତରଫରୁ ଏକ ବୈଠକ ରଖି ଉକ୍ତ ତଥ୍ୟର ସତ୍ୟତା ପ୍ରମାଣ ପାଇଁ ଉଭୟଙ୍କୁ ବୈଠକରେ ଡାକାଯାଇଥିଲା। ବୈଠକରେ ଦୁହେଁ କମ୍ପାନୀ ତରଫରୁ ପାଞ୍ଚହଜାର ଟଙ୍କା ମିଳିବା କଥା ସ୍ୱୀକାର କରିଥିଲେ । ଯାହାଫଳରେ ସେମାନଙ୍କୁ ମଧ୍ୟ ସଂଗଠନ ମଧ୍ୟରୁ ବିତାଡିତ କରାଗଲା । ପରବର୍ତ୍ତି ସମୟରେ କୋଭିଡ୍ କଟକଣା ଯୋଗୁଁ କୌଣସି ବୈଠକ ଅନୁଷ୍ଠିତ ହୋଇପାରିନଥିଲା । ଯଦିଓ ସ୍ଥାନୀୟ ଲୋକମାନେ ବୈଠକ ବସିବା ପାଇଁ ଚେଷ୍ଟା କରିଥିଲେ, ସଂଗଠନ ସହ ବିଶ୍ୱାସଘାତକତା କରିଥିବା ପୂର୍ବତନ ସଭାପତି ପ୍ରିତମ ପାଢ଼ୀ କେମିତି କୌଣସି ବୈଠକ ହେଇ ନପାରିବ ସେ ଦିଗରେ ଅସୁବିଧା ସୃଷ୍ଟି କରିଥିଲେ । (ପ୍ରୀତମ ପାଢୀ ବର୍ତ୍ତମାନ ଏମ୍. ଏଲ. ଏ)

ବର୍ତ୍ତମାନ ୨୦୨୦ରେ ମାଳି ପର୍ବତ ସୁରକ୍ଷା ସମିତି ପୁଣିଥରେ ଚୟନ କରାଯାଇଛି । ବିଜୟ ଖୀଲ ସଭାପତି, ଅଭି ସଡ଼ାପାଲି ସଂପାଦକ, ଦିସାରି ଖୁରା ଉପସଭାପତି, ପଦ୍ମନ ନାୟକ ଉପସଂପାଦକ, ଗୋବର୍ଦ୍ଧନ ଖିଲ କୋଷାଧ୍ୟକ୍ଷ ହିସାବରେ ବର୍ତ୍ତମାନ ଚଲାଉଛନ୍ତି ।

ବିଶ୍ୱର ପନ୍ଦର ତଥା ଦେଶର ପଞ୍ଚସ୍ତରୀ ଭାଗ ବକ୍ସାଇଟ ଓଡ଼ିଶାର କେବିକେ (କଳାହାଣ୍ଡି-ବଲାଙ୍ଗୀର-କୋରାପୁଟ) ଜିଲ୍ଲାରେ ଗଛିତ ଅଛି। ସେଥିପାଇଁ ଅନେକ ଦେଶୀ ବିଦେଶୀ କମ୍ପାନୀଙ୍କ ଲୋଭିଲା ଆଖି ଏ ଅଞ୍ଚଳର ସପାଟ ପାହାଡ଼ମାନଙ୍କ ଉପରେ। ଏହି ପ୍ରାକୃତିକ ସମ୍ପଦ ଲୁଟ ବିରୁଦ୍ଧରେ ଛିଡା ହେଇଛି ଅନେକ ଜନ ଆନ୍ଦୋଳନ। ସରକାର, ସୈନ୍ୟ ଓ ପୋଲିସ ବାହିନୀ, ନେତାମନ୍ତ୍ରୀ ସର୍ବୋପରି ଭାରତୀୟ ରାଷ୍ଟ୍ର ନିଜ ଦେଶର ସାଧାରଣ ମଣିଷର ତଂଟି ଚିପି ନିଜ ଜଳ ଜଙ୍ଗଲ ଜମି ତୋଳି ଦେବାକୁ ଚାହୁଁଛି କମ୍ପାନୀ

ହାତକୁ। ସାଧାରଣ ମଣିଷ ବିରୋଧ କରୁଛି ପ୍ରାଣପଣେ। କମ୍ପାନୀ, ସରକାର, ଗୁଣ୍ଡା, ଦଲାଲ, ପ୍ରଶାସକ, ପୋଲିସ, ସୈନ୍ୟକୁ କିଣି ଶେଷରେ ଲୋକଙ୍କୁ କିଣିବାକୁ ବିଭିନ୍ନ ଭାବରେ ପ୍ରଲୋଭିତ କରୁଛି। କିଛି ଲୋକଙ୍କୁ ଟାଣି ବି ଆଣୁଛି। ନିଜ ମା ମାଟି କୁ ବଞ୍ଚେଇବାର ଏ ଲଢେଇ ଏବେ ବି ଜାରି ଅଛି।

ଜୟ ପ୍ରକୃତିର ହିଁ ହେବ, ଜୟ ମଣିଷର ହିଁ ହେବ।

-୦-

